# ହିତକଥା

ଚୁକଡ଼ି ମହାନ୍ତି

ପ୍ରଣେତା—

ଶ୍ରୀ ଛ[illegible]ନ୍ତି

ପ୍ରଥମ ସଂସ୍କରଣ

ପ୍ରକାଶକ—

ଶ୍ରୀ ସୋମନାଥ ମହାନ୍ତି

ବାଣୀ-ସାହିତ୍ୟ-ମନ୍ଦିର, ଭଦ୍ରକ

୧୯୨୮ ସାଲ

ମୂଲ୍ୟ [illegible]୦ | ମାତ୍ର

# ଉତ୍ସର୍ଗ

ମୋର ବାଲ୍ୟାବସ୍ଥାରେ ମୋର ସ୍ୱର୍ଗୀୟ ପିତା ଓ ସଂସାର ଅବସ୍ଥାରେ
ମୋର ସ୍ୱର୍ଗୀୟା ମାତା ଠାକୁରାଣୀଙ୍କ ଠାରୁ ସଂସାର ସମ୍ବନ୍ଧରେ ମୁଁ
ଯଥେଷ୍ଟ ଉପଦେଶ ପାଇଥିଲି । ଜୀବନ ପଥରେ ନାନା
ବିପଦ ଓ ଦୁର୍ଘଟନାରେ ପଡ଼ି ସେମାନଙ୍କର
ସେହି ଉପଦେଶାନୁସାରେ ଈଶ୍ୱରନିର୍ଭର-
ଶୀଳ ହୋଇ ନାନା ବିପଦରୁ ରକ୍ଷା
ପାଇଅଛି । ସେହି ଅଗାଧ
କୃପାର ସ୍ମୃତିସ୍ୱରୂପ ଏହି କ୍ଷୁଦ୍ର
ପୁସ୍ତିକା ଖଣ୍ଡିକୁ ସେମାନଙ୍କ
ଦେବଚରଣ ଉଦ୍ଦେ-
ଶ୍ୟରେ ଅର୍ପଣ
କଲି ।

# କୃତଜ୍ଞତା

ଏହି ପୁସ୍ତିକାର ସଂଶୋଧନ, ପ୍ରୁଫ୍ ସଂଶୋଧନ, ବର୍ଣ୍ଣାଶୁଦ୍ଧି ପ୍ରଭୃତିର ଭାର ମୋର ହିତାକାଙ୍କ୍ଷୀ କବିବର ଶ୍ରୀଯୁକ୍ତ ଚିନ୍ତାମଣି ମହାନ୍ତି ଓ ମୋର ଜେଠୁବାପୁଅ ଭାଇ ଶ୍ରୀଯୁକ୍ତ ବାବୁ ସୋମନାଥ ମହାନ୍ତି ଗ୍ରହଣ କରି ସାହାଯ୍ୟ କରିଥିବାରୁ ସେମାନଙ୍କଠାରେ ମୁଁ ଚିରଋଣୀ ।

ଶ୍ରୀ ଛକଡ଼ି ମହାନ୍ତି

# ମନ୍ତବ୍ୟ

ମୋର ପରମାତ୍ମୀୟ ବନ୍ଧୁବର ଶ୍ରୀଯୁକ୍ତ ଛକଡ଼ି ମହାନ୍ତିଙ୍କ ସଂକଳିତ "ହିତକଥା"ର ପାଣ୍ଡୁଲିପି ପାଠକରି ମୁଁ ପରମ ପ୍ରୀତି ଲାଭକରିଅଛି । ଛକଡ଼ି ବାବୁ ବହୁ ପରିଶ୍ରମରେ ଶାସ୍ତ୍ର, ପୁରାଣ,ଇତିହାସ, ପୁସ୍ତକ, ପତ୍ରିକା ପ୍ରଭୃତିରୁ ସଦୁକ୍ତି ସଂଗ୍ରହ କରି ପୁସ୍ତକାକାରରେ ପ୍ରକାଶ କରିଅଛନ୍ତି । ତାଙ୍କୁ ଏ ଦିଗରେ ପ୍ରବୃତ୍ତ ହେବାର ଦେଖି ମୁଁ ଆଶାନ୍ୱିତ । ତାଙ୍କର 'ଭାରତୀୟ ଶିଳ୍ପ' ତାଙ୍କୁ ଅମର କରି ରଖିବ ।

ହିତକଥାର ପାଣ୍ଡୁଲେଖ୍ୟ ଆମୂଳଚୂଳ ପାଠକରି ମୁଁ ଯଥାସାଧ୍ୟ ସଂଶୋଧନ କରି ଦେଇଅଛି । ପୁସ୍ତକର ଭାଷା ସରଳ , ସୁବୋଧ୍ୟ ଏବଂ ନୀତିଗର୍ଭକ । ପ୍ରଣେତାଙ୍କର ସାଧୁ ଉଦ୍ଦେଶ୍ୟ ସଫଳ ହେବ, ଏଥିରେ ସନ୍ଦେହ ନାହିଁ । ଏ ପୁସ୍ତକରୁ ସୁକୁମାରମତି ବାଳକବାଳିକାମାନେ ଧର୍ମ ନୀତି ଏବଂ ସଦୁପଦେଶ ଶିକ୍ଷାର ସୁବିଧା ଏକାଧାରରେ ପାଇ ପାରିବେ ।

ଭଦ୍ରଖ
ତା ୩୧।୫।୬୮



ଶ୍ରୀ ଚନ୍ଦ୍ରାମଣି ମହାନ୍ତି

# ଭୂମିକା

---

ଦେଶର ମଙ୍ଗଳପାଇଁ ଆର୍ଯ୍ୟଋଷିଗଣ ଓ ମହାତ୍ମାମାନେ ନାନା ବିଷୟରେ ନାନା ହିତବାକ୍ୟମାନ ଲିପିବଦ୍ଧ କରି ଯାଇ ଅଛନ୍ତି । କିନ୍ତୁ ସେ ସମସ୍ତ ଏତେ ବୃହତ୍ ଓ ବିକ୍ଷିପ୍ତ ଯେ, ତାହା ସାଧାରଣ ଲୋକ ଓ ଅଳ୍ପ-ବୟସ୍କ ବାଳକବାଳିକାମାନଙ୍କ ପକ୍ଷରେ ଅବଗତ ହେବା ଅତି ଦୁରୂହ ବ୍ୟାପାର ଅଟେ । ମୋପରି କ୍ଷୁଦ୍ର ଓ ନଗଣ୍ୟ ଲୋକ ପକ୍ଷରେ ଆର୍ଯ୍ୟ ଋଷି ଓ ମହାତ୍ମା ମାନଙ୍କ କୃତ ଅଗାଧ ଜଳପୂର୍ଣ୍ଣ ପାବଚ୍ଛସ୍ଥାନ ପୁଷ୍କରିଣୀ ତୁଲ୍ୟ ହିତଶାସ୍ତ୍ରକୁ ଅବଗତ ହେବା କେବଳ ବିଡ଼ମ୍ବନା ମାତ୍ର । ବିଶେଷରେ ମୋର ଏପରି ଉଚ୍ଚଶିକ୍ଷା ନାହିଁ ଯେ, ମୁଁ ସେ ସମସ୍ତ ଜାଣିବା ପାଇଁ ଉଦ୍ୟତ ହେବି । କେବଳ ଦେଖାଶୁଣାରେ ସମୟ ସମୟରେ କେତେଖଣ୍ଡ ପୁସ୍ତକଉପରେ ଦୃଷ୍ଟି ପଡ଼ିଥିବାରୁ ସେଥିରୁ କେତେଗୁଡ଼ିଏ ସଂଗ୍ରହ କରି ଏବଂ ସେଥିରେ ନିଜର ଅନୁଭବ ମିଶାଇ ଏହି କ୍ଷୁଦ୍ର ପୁସ୍ତକ ଖଣ୍ଡିକୁ "ହିତକଥା" ନାମରେ ଅଭିହିତ କରି ପ୍ରକାଶ କଲି । ଶାସ୍ତ୍ରକାରମାନେ ଯାହା ଲେଖି ଯାଇ ଅଛନ୍ତି, ସେ ସମସ୍ତର କାରଣ ବୁଦ୍ଧିମାନ୍ ବ୍ୟକ୍ତି ମାନେ ନିର୍ଦ୍ଦେଶ କରି କାର୍ଯ୍ୟ କରନ୍ତି, କିନ୍ତୁ ଅଜକାଲି ଅନେକେ ବୁଝି ନ ପାରି କାରଣ ପଚାରି ନାନା ଯୁକ୍ତି କରନ୍ତି । ଯଥା:— "ପଶୁବନ୍ଧନ ରଜ୍ଜୁ ଡେଇଁବ ନାହିଁ ।" କାରଣ ଡେ଼ଇଁବା ସମୟରେ ଯଦି ପଶୁଟି ଭୟ କରି ପଳାଇବ, ତେବେ ବିପଦ ଘଟି ପାରେ । "ଗୋରୁ ଓ ମହିଷର ଦୁଧ ଦୋହନ ପରେ ଖାଇବ" । କାରଣ ସେଥିରେ ବିଷାଂଶ ଥିବାରୁ ବଡ଼ ଗରମ ହୁଏ ଓ ଝାଡ଼ା ହୁଏ । "ଉଚ୍ଚସ୍ଥାନରେ ବସି ମଳମୂତ୍ର ତ୍ୟାଗ କରିବ ।" କାରଣ ସେ ସମସ୍ତ ଶରୀରର ବହିଷ୍କୃତ ପଦାର୍ଥ ପାଦରେ



ଲଟିଲେ ଅନିଷ୍ଟ କରିବ । "ରାତିରେ ଦକ୍ଷିଣକୁ ମୁଖ କରି ମଳମୂତ୍ର ତ୍ୟାଗ କରିବ ।" କାରଣ ରାତିରେ ଦକ୍ଷିଣରୁ ପବନ ବହେ, ମଳମୂତ୍ରର ଦୁର୍ଗନ୍ଧି ପବନ ଦେହରେ ଲାଗିବ ନାହିଁ । "ଦିନରେ ସୂର୍ଯ୍ୟଙ୍କର ବିପରୀତ ଦିଗକୁ ମୁଖ କରି ମଳମୂତ୍ର ତ୍ୟାଗ କରିବ ।" କାରଣ ମଳମୂତ୍ର ତ୍ୟାଗ ସମୟରେ ଚକ୍ଷୁରେ ଜୋର୍ ପଡେ, ସୂର୍ଯ୍ୟତେଜ ଉକ୍ତ ସମୟରେ ଚକ୍ଷୁରେ ଲାଗିଲେ ଚକ୍ଷୁ ଶୀଘ୍ର ଜ୍ୟୋତିହୀନ ହେବ । ଏହିପରି ଭାବରେ ପ୍ରତ୍ୟେକଟିର ଶରୀର ରକ୍ଷା ପାଇଁ ନିଗୂଢ଼ କାରଣମାନ ଅଛି ।

ଏହି କ୍ଷୁଦ୍ର ପୁସ୍ତିକାରେ କେତେଗୁଡ଼ିଏ ଅବଶ୍ୟକୀୟ ଶାସ୍ତ୍ରୀୟ ବିଷୟ ଓ ମୋର ନିଜର ଅନୁଭୂତ ବିଷୟ ଉଲ୍ଲେଖ କଲି । ଆଶା କରେଁ, ପାଠକପାଠିକାମାନେ ମୋର କ୍ଷୁଦ୍ର ବୁଦ୍ଧି ଓ ଜ୍ଞାନର ଦୋଷ ନ ଧରି ପୁସ୍ତକଗତ ବିଷୟ ପ୍ରତି ମନୋଯୋଗ ଦେବେ ।ଇତି ।

ଜଗନ୍ନାଥ ପୁର, ଭଦ୍ରଖ } ଶ୍ରୀ ଛକଡ଼ି ମହାନ୍ତି

ଗ

# ହିତକଥା

## ୧

ନିଜେ ଯତ୍ନ ନ କଲେ ଧନ ରକ୍ଷା ହୁଏ ନାହିଁ । ପିତାମାତା ପୁତ୍ରକୁ କୌଳିକ ଶିକ୍ଷା ନ ଦେଲେ ପୁତ୍ର ଦରିଦ୍ର ହୋଇ ଦୁଃଖ ପାଏ । ବହୁ ଧନ ସମ୍ପତ୍ତି ଥାଇ ନିଜର ଗୁଣ ନ ଥିଲେ ଦରିଦ୍ର ହେବାକୁ ହୁଏ । ନିଜ ବୃତ୍ତି ନ କରି ଅନ୍ୟ ବୃତ୍ତି ଦ୍ୱାରା ଯେ ବଡ ହେବାକୁ ମନେ କରେ, ସେ ପରେ ଦରିଦ୍ର ହୁଏ । ଲୋକେ ତାହାକୁ ବର୍ଣ୍ଣସଙ୍କର କହନ୍ତି । ତାହା ହାତରୁ ପିତୃଲୋକେ ପିଣ୍ଡ ପାଆନ୍ତି ନାହିଁ । (ବ୍ରଜବିହାର ୨ୟ ବୋଲି) ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗୋବତ୍ସ ରଖିଯିବା ନିମନ୍ତେ କହିବାରୁ ନନ୍ଦ ଓ ଯଶୋଦା ବତ୍ସରଖା ଅତି କଠିନ କାର୍ଯ୍ୟ କହି ନିଷେଧ କଲେ । ତହୁଁ ଶ୍ରୀଶ୍ରୀ କୃଷ୍ଣଚନ୍ଦ୍ର ଉପଦେଶ ଛଳରେ ପିତାମାତାଙ୍କୁ ବୁଝାଇ କହିବାର ବର୍ଣ୍ଣନା ସେଥିରେ ଅଛି । ଏହାକୁ ସଂସ୍କୃତରେ ରୂପସନାତନ ଗୋସ୍ୱାମୀ ଲେଖିଥିଲେ; ଏହା ସାଧାରଣରେ ପ୍ରଚରିତ ନ ହେବାରୁ ରଣପୁର ନିବାସୀ ଦାଶରଥି ଦାସ ପ୍ରାକୃତରେ କରିଥିଲେ । ବର୍ତ୍ତମାନ ସୋର ନିବାସୀ ପାବଙ୍କ୍ଷ ବାବୁ **B. A.** ବର୍ତ୍ତମାନ ବୈଷ୍ଣବ, ପ୍ରଥମବାର ପ୍ରକାଶ କରୁଅଛନ୍ତି । ଆହୁରି ମଧ୍ୟ ଗୀତାରେ ଅଛି:— ନିଜ ବୃତ୍ତି ଧର୍ମ ତ୍ୟାଗ କରି ପରବୃତ୍ତି ଧର୍ମ ଆଶ୍ରୟ କରିବା ଭୟାବହ ଅଟେ ।

୨

ଅହଂକାର ପତନର ଲକ୍ଷଣ ଅଟେ । ଯେପରି ଦ୍ରୌପଦୀ ବନକୁ ଯିବା ସମୟରେ ଅହଂକାର କରିବାରୁ ତାଙ୍କର ଗଟଗଞ୍ଜନ ମାନସରେ ଅକାଳ ଆମ୍ବ ସୃଷ୍ଟି ହୋଇଥିଲା । [ମହାଭାରତ ବନପର୍ବ]

୩

ନିର୍ଭର ନ କଲେ କୌଣସି କାର୍ଯ୍ୟ ସିଦ୍ଧ ହୁଏ ନାହିଁ । ଦ୍ରୌପଦୀଙ୍କର କୁରୁସଭାରେ ବସ୍ତ୍ର ହରଣ ସମୟରେ ସେ ଯେପର୍ଯ୍ୟନ୍ତ ଗୋଟିଏ ହସ୍ତରେ ବସ୍ତ୍ରଦ୍ୱାରା ଶରୀରକୁ ଆଚ୍ଛାଦନ କରି ଆଉ ଗୋଟିଏ ହସ୍ତଦ୍ୱାରା ଭଗବାନଙ୍କୁ ପ୍ରାର୍ଥନା କରୁଥାନ୍ତି, ସେପର୍ଯ୍ୟନ୍ତ କିଛି ପ୍ରତିକାର ପାଉ ନ ଥାନ୍ତି; କିନ୍ତୁ ଯେତେବେଳେ ଦୁଇହାତ ଉପରକୁ ଟେକି ଭଗବାନଙ୍କୁ ବ୍ୟାକୁଳ ସ୍ୱରରେ ଡାକିଲେ ସେତେବେଳେ ଦୁଃଶାସନ ତାଙ୍କ ଦେହରୁ ଯେତେ ବସ୍ତ୍ର ବାହାର କରୁଥାଏ, ତେତେ ବସ୍ତ୍ର ବାହାରୁଥାଏ ଏବଂ ଯେଉଁ ଅଙ୍ଗରୁ ବସ୍ତ୍ର ବହିର୍ଗତ ହେଉଥାଏ, ତତ୍‌କ୍ଷଣାତ୍ ସେହି ଅଙ୍ଗ ଅନ୍ୟ ବସ୍ତ୍ରଦ୍ୱାରା ଆବୃତ ହେଉଥାଏ । [ମହାଭାରତ ସଭାପର୍ବ]

୪

ଯେ ସହିପାରେ ସେ ବଡ଼ ହୁଏ । ଧାନଗଛ ମଡ଼ା, ଚକଟା, ବନ୍ଧା, ପିଟା ଇତ୍ୟାଦି କେତେ କଷ୍ଟ ସହେ, ସେହି ହେତୁରୁ ସେ ଘର ଉପରେ ରହି ବଡ ହୋଇ ସମସ୍ତଙ୍କୁ ରକ୍ଷାକରେ ଏବଂ ସୁଖଶାନ୍ତି ଦିଏ ।

୫

ଯେ ନମ୍ର ହୁଏ, ତାହାର ଜୀବନ ଧନ୍ୟ । ସବୁ ଘାସ ଉଚ୍ଚ ହୋଇ ବଢ଼ି ଥିବାରୁ ପଶୁ ପ୍ରଭୃତି ଚରି ନଷ୍ଟ କରନ୍ତି, କିନ୍ତୁ ଦୁବଘାସ ସେପରି ଊର୍ଦ୍ଧ୍ୱକୁ ବଢେ ନାହିଁ । ସେ ଶୁଭ କାର୍ଯ୍ୟରେ ଲାଗେ । ତାକୁ ମଥାରେ ଅକ୍ଷତ ସହି

ଦେଇ ଆଶୀର୍ବାଦ କରନ୍ତି । ଦୁବ ଔଷଧରେ ଲାଗେ । ଗୋରୁ ପ୍ରଭୃତି ତାକୁ ଖାଇ ବଳବାନ୍ ହୁଅନ୍ତି । ଅତଏବ ଯେ ନମ୍ର ହୁଏ, ସେ ଦୁବଘାସପରି ହୁଏ ।

୬

ଯେ ବଳବାନ୍ ନିକଟରେ ନମ୍ର ହୋଇ ବଳବାନର ଅତ୍ୟାଚାର ସହେ ତାହାର ଜୟ ହୁଏ । ଯଥା – ନଦୀର ପ୍ରବଳ ବେଗରେ ତଣ୍ଡିଘାସ ନତ ହୋଇ ଶୋଇ ପଡୁଥିବାରୁ ପଟୁ ପଙ୍କ ଚରବାନ୍ଧି ନଦୀକୁ ଦୂରକୁ ହଟାଇ ଦଏ ।

୭

ଯେ ଅନ୍ୟର ଅନିଷ୍ଟ ଚିନ୍ତାକରେ, ଈଶ୍ୱର ତାହାର ଅନିଷ୍ଟ କରନ୍ତି । ଯଥା;—ଦୁର୍ଯ୍ୟୋଧନ ପାଣ୍ଡବ ମାନଙ୍କର ସର୍ବଦା ଅନିଷ୍ଟ ଚିନ୍ତାକରି ନାନା କଷ୍ଟ ଦେଉଥିବାରୁ ଶେଷରେ ସବଂଶରେ ମଲା । [ମହାଭାରତ]

୮

ଯେ ଅତିଶୀଘ୍ର ବଢ଼େ ବା ଉଚ୍ଚ ହୁଏ,ସେ ଶୀଘ୍ର ନଷ୍ଟ ହୁଏ । ଯଥା;— ଲାଉ, ବୋଇତି ଆଳୁ ପ୍ରଭୃତି ଲତା ଓ ବାଉଁଶ ।

୯

ବାଉଁଶ ବୁଦାରେ ମାଟି ନଦେଇ ଆବାଦ ନକଲେ ଯେପରି ବୁଦା ଚୂଳିଆ ଧରି କ୍ରମେ କ୍ରମେ ଗ୍ରେଣ୍ଠ ଗ୍ରେଣ୍ଠ ଓ ସରୁ ସରୁ କାଉଁଶ ହୋଇ ବୁଦା ନଷ୍ଟ ହୁଏ, ସେହିପରି କୌଣସି ବ୍ୟକ୍ତିର ବଂଶ ଅଧମ ହେବାକୁ ଆରମ୍ଭ କଲେ ଏହିପରି ହୁଅନ୍ତି । ଯଦି କେହି ସେହି ଚୂଳିଆ ବୁଦାକୁ ନଷ୍ଟହେବା ପୂର୍ବରୁ ମାଟି ଦେଇ ଯତ୍ନକରି ଆବାଦ କରେ, ତେବେ ସେହି ବୁଦାରୁ ପୂର୍ବପରି ଭଲ ବାଉଁଶ ବାହାରେ । ସେହିପରି କୌଣସି ଅଧୋଗତି-ପ୍ରାପ୍ତ ପରିବାରକୁ ଯତ୍ନକରି ସୁପଥକୁ ଆଣିଲେ ସେ ପୁଣି ପୂର୍ବପରି ଜୀବନ୍ତ ହୋଇ ଉଠେ ।

୧୦

କୌଣସି ବୃକ୍ଷର ବୀଜ ଏକସ୍ଥଳରେ ବହୁତ ଗୁଡ଼ିଏ ପକାଇଲେ ସେଥିରୁ ବହୁତଗୁଡ଼ିଏ ଗଛ ହୁଏ। ଯଦି ମାଟିର ବଳ ଥାଏ, ତେବେ ଗୋଟିଏ ଯୋଡ଼ିଏ ଟେକିଯାନ୍ତି, ନଚେତ୍ ସମସ୍ତ ନଷ୍ଟ ହୁଅନ୍ତି। ଯଦି ସେ ସବୁକୁ ପୃଥକ୍ ପୃଥକ୍ କରି ଲଗାଇ ଯତ୍ନ କରାହୁଏ, ତେବେ ସେ ଗୁଡ଼ିକ ପ୍ରତ୍ୟେକ ସ୍ୱତନ୍ତ୍ର ଭାବେ ଗୋଟିଏ ଗୋଟିଏ ବୃକ୍ଷ ହୋଇ ଫଳପ୍ରଦ ହୁଅନ୍ତି। ପୃଥକ୍ ପୃଥକ୍ ଲଗାଇ ଯତ୍ନକଲେ ଉର୍ବର ଭୂମି ହୋଇଥିଲେ ସୁଦ୍ଧା ନଷ୍ଟ ହୁଅନ୍ତି। ସେହିପରି କୌଣସି ବ୍ୟକ୍ତିର ବହୁସନ୍ତାନ ହେଲେ ଓ ସେ ସୁବଂଶ ହୋଇଥିଲେ ସୁଦ୍ଧା ସେମାନଙ୍କୁ ପୃଥକ୍ ପୃଥକ୍ ରଖାଇ ଉପଯୁକ୍ତ ଗୁରୁଦ୍ୱାରା ଉପଯୁକ୍ତ ଶିକ୍ଷା ଦେବ, ଯେ ପର୍ଯ୍ୟନ୍ତ ସେମାନେ ଆପଣାକୁ ନିଜର ଆତ୍ମଜ୍ଞାନ ଦ୍ୱାରା ରକ୍ଷା କରିବାରେ ସମର୍ଥ ନ ହୁଅନ୍ତି।

୧୧

ଅଗ୍ନି ଯେପରି ସର୍ବଧ୍ୱଂସକାରୀ, ସେହିପରି ଅଗ୍ନି ତୁଲ୍ୟ କୋପକୁ ଯେ ସର୍ବଦା ବହିଥାଏ ସେ ସେହିପରି ନିଜକୁ କଷ୍ଟ କରେ ଏବଂ ଅଗ୍ନି ନିକଟବର୍ତ୍ତୀ ବସ୍ତୁ ଯେପରି ଉତ୍ତାପ ହେତୁ ନଷ୍ଟ ହୁଏ, ସେହିପରି ଯେ କୋପୀ ବ୍ୟକ୍ତିର ସଂସର୍ଗ କରେ, ସେ ନଷ୍ଟ ହୁଏ।

୧୨

କୁଳକ୍ଷୟ ସମୟ ଉପସ୍ଥିତ ହେଲେ ବହୁ ସନ୍ତାନ ଉତ୍ପନ୍ନ ହୁଅନ୍ତି। କୁରୁକୁଳ, ଯଦୁବଂଶ, ସଗର ପୁତ୍ର, ରାବଣର ବଂଶ ଏଥିର ଉଦାହରଣ ଅଟେ। ଏହା ମଧ୍ୟ ସାଧାରଣରେ ଦୃଷ୍ଟି ଗୋଚର ହୁଏ ଯେ ବହୁ ପୁତ୍ରବାନ୍ ବ୍ୟକ୍ତିର ଅହଂକାର ହୁଏ ଏବଂ ପୁଅ ଗୁଡ଼ିକ ଦୁର୍ଦ୍ଦଣ୍ଡ ହୋଇ ନାନା ଉପଦ୍ରବ କରି ନଷ୍ଟ ହୁଅନ୍ତି।

୧୩

ଅସ୍ୱାଭାବିକ ଭାବେ ବର୍ଦ୍ଧନ ନଷ୍ଟର କାରଣ ଅଟେ । କି ବୃକ୍ଷ, କି ପଶୁ କି ମନୁଷ୍ୟ ସମସ୍ତଙ୍କର ଏହି ଦଶା ଅଟେ । ଲକ୍ଷ୍ୟ କରି ଦେଖିଲେ ଅନୁମାନ କରି ପାରିବ ।

୧୪

ଅଳ୍ପ ପଢ଼ି ବହୁତ ଭାବନା ବ୍ୟକ୍ତି ପ୍ରକୃତ ଜ୍ଞାନୀ ଅଟେ ।

୧୫

ସଫରୀ ଅଳ୍ପ ଜଳରେ ଫରଫର ହେବା ଓ ବଡ଼ ମାଛ ଗଭୀର ଜଳରେ ରହିବା ଯେପରି ଦୃଷ୍ଟାନ୍ତ, ସେହିପରି ଯେ ବ୍ୟକ୍ତି ବେଶି କହି ବାହାଦୁରି ଦେଖାଉଥାଏ, ସେ କିଛି କରିପାରେ ନାହିଁ ।

୧୬

ଦୁଃଖ ସମୟ ପହଞ୍ଚିଲେ ଗୋରୁ କଷ୍ଟ ପାନ୍ତି । ସୁଖ ସମୟ ଉପସ୍ଥିତ ହେଲେ ପୁତ୍ର ଗୁଣବାନ୍ ହୁଏ । ମର୍ଯ୍ୟାଦାନାଶ ସମୟ ଉପସ୍ଥିତ ହେଲେ କୁଳନାରୀମାନେ କୁଳଟା ହୁଅନ୍ତି । ବଂଶନାଶ ସମୟ ଉପସ୍ଥିତ ହେଲେ ଗୁରୁଜନ, ମହତ୍ ବ୍ୟକ୍ତି, ପ୍ରଧାନ ପୁରୁଷ, ରାଜପୁରୁଷ, ବୟୋଧିକ ବ୍ୟକ୍ତି ପଣ୍ଡିତ ବ୍ୟକ୍ତି, ମାନ୍ୟଗଣ୍ୟବ୍ୟକ୍ତି ପ୍ରଭୃତିଙ୍କ ବିରୁଦ୍ଧାଚରଣ କରି ଲୋକେ ନଷ୍ଟ ହୁଅନ୍ତି ।

୧୭

ଇତର ବ୍ୟକ୍ତି ବୟୋଧିକ ହେଲେ ସୁଦ୍ଧା ତାହାର ବାକ୍ୟ ପାଳନୀୟ । କାରଣ ସେ ଲେଖାପଢ଼ା ଜାଣି ନ ଥିଲେ ମଧ୍ୟ ବୟୋଧିକ ହେତୁ ସଂସାରର ବହୁ ବିଷୟ ଜାଣି ବହୁଦର୍ଶିତା ଲାଭ କରିଥାଏ ।

୧୮

ଅସତ୍ୟବାଦୀ ବ୍ୟକ୍ତି କଦ୍ପି କାଳେ ବିଶ୍ୱାସୀ ନୁହେଁ । ବରଂ ମଦ୍ୟପାୟୀ ଓ ପରସ୍ତ୍ରୀଗମନକାରୀ ସତ୍ୟବାଦୀ ହୋଇଥିଲେ ବିଶ୍ୱାସୀ ହୋଇ ପାରେ । କିନ୍ତୁ ଅସତ୍ୟବାଦୀ ବଚନ-ଭ୍ରଷ୍ଟବ୍ୟକ୍ତିକୁ କଦାଚ ବିଶ୍ୱାସ ନାହିଁ

୧୯

ଶୃଙ୍ଗୀକାର, ବଳବନ୍ତ ବ୍ୟକ୍ତି ଓ ପଶୁକୁ କଦାଚ ବିଶ୍ୱାସ କରିବ ନାହିଁ । କ୍ରୋଧୀବ୍ୟକ୍ତି ଚଞ୍ଚଳପର ଅଟେ । ସେହି ହେତୁରୁ ତାକୁ ବିଶ୍ୱାସ କରିବ ନାହିଁ ।

୨୦

ରାଜା, ରାଜପୁରୁଷ, ଗୁଣୀ, ଜ୍ଞାନୀ, ଧନୀ ଓ ବୟୋଧିକ ବ୍ୟକ୍ତି ସର୍ବଦା ମାନନୀୟ ଅଟନ୍ତି ।

୨୧

ସ୍ତ୍ରୀଜାତି ସର୍ବତ୍ରେ ମାନନୀୟା ଅଟନ୍ତି । ବହୁକାଳ ପୂର୍ବରୁ ଭାରତରେ ସ୍ତ୍ରୀମାନେ ଦେବୀରୂପେ ପୂଜିତା ହୋଇ ଆସୁଅଛନ୍ତି । ସ୍ତ୍ରୀମାନେ ଧାତ୍ରୀରୂପେ ସନ୍ତାନ ପାଳନ୍ତି ବୋଲି ଜଗଦ୍ଧାତ୍ରୀ ରୂପେ ପୂଜା ପାନ୍ତି । ଗୃହର ସମସ୍ତ ରକ୍ଷଣାବେକ୍ଷଣ ହେତୁ ଲକ୍ଷ୍ମୀରୂପେ ପୂଜା ପାନ୍ତି । ସନ୍ତାନମାନଙ୍କ ପାଇଁ ଯୁଦ୍ଧ କରନ୍ତି ବୋଲି ଦୁର୍ଗାରୂପେ ପୂଜା ପାନ୍ତି ଓ ଦୁଷ୍ଟ ସନ୍ତାନମାନଙ୍କୁ ଶାସନ କରନ୍ତି ବୋଲି କାଳୀରୂପେ ପୂଜା ପାନ୍ତି ।

୨୨

ଦେଶାଚାର ଓ କୁଳାଚାର ପ୍ରଥାକୁ କଦାଚ ଅବହେଳା କରିବ ନାହିଁ । ଯୁଧିଷ୍ଠିର ଧର୍ମରୂପୀ ବକଙ୍କୁ ପ୍ରତ୍ୟୁତ୍ତର ଦେଇ ଜଳପାନ କରି ଭାଇମାନଙ୍କୁ ବଞ୍ଚାଇ ଥିଲେ । (ମହାଭାରତ ଆଦିପର୍ବ)

୧୩

ସତ୍ୟ ହୋଇଥିଲେ ମଧ୍ୟ କାହାର ମର୍ମକଥା କହିବ ନାହିଁ । ଏହା ଶାସ୍ତ୍ରୋକ୍ତି ଅଟେ ।

୧୪

କାହାର ନ୍ୟାୟ କରିବାକୁ ସହଜେ ଯିବ ନାହିଁ । ଯଦି ଯାଅ ତେବେ କାହାର ପକ୍ଷାବଲମ୍ବନ କରିବ ନାହିଁ । ଏହା ଶାସ୍ତ୍ରୋକ୍ତି ଅଟେ । ଥରେ ଦୁର୍ଗାଦେବୀ ଶିବଙ୍କୁ ପଚାରିଲେ—ବଳିରକ୍ତକୁ ଚଣ୍ଡୀଗୃମୁଣ୍ଡା ତ ଖାନ୍ତି, ସ୍ତ୍ରୀମାନଙ୍କର ରଜଃନିସୃତ ଶୋଣିତକୁ କିଏ ଖାଏ ? ଶିବ କହିଲେ, ନ୍ୟାୟରେ ବସି ଯେ ବ୍ୟକ୍ତି ପକ୍ଷାବଲମ୍ବନ କରେ ସେ ବ୍ୟକ୍ତି ସେହି ଶୋଣିତ ପାନ କରେ ।

୧୫

ଅନ୍ୟର ମଙ୍ଗଳ ଦେଖି ଯାହାର ଈର୍ଷ୍ୟା ଜାତ ହୁଏ, ତାହାର କଦାଚ ମଙ୍ଗଳ ହୁଏ ନାହିଁ । ଏହା ଶାସ୍ତ୍ରୋକ୍ତି ଅଟେ ଏବଂ ସଚରାଚର ଦେଖାଯାଏ ।

୧୬

ଯେ ଅପରକୁ ଠକାଏ, ସେ ଆପେ ପ୍ରତାରିତ ହେଲା ବୋଲି ଜାଣିବ । ଯଥା:—ପିଲାମାନେ ପଢ଼ିବା ସମୟରେ ଅବଧାନଙ୍କୁ ଠକାଇବା ମାନସରେ ଏକ ଦୁଇ କହି ବାରଂବାର ବାହାରକୁ ଯାଇ ଅନର୍ଥକ ସମୟ ନଷ୍ଟ କରନ୍ତି, ତାହାଦ୍ୱାରା ନିଜର କ୍ଷତି ହୁଏ, ପରେ ବୁଝି ପାରନ୍ତି ।

୧୭

ଗର୍ବିତ ବ୍ୟକ୍ତି କଦାଚ ଉନ୍ନତି ଲାଭ କରିପାରେ ନାହିଁ ।

୨୮

ଆତ୍ମୋନ୍ନତ ପାଇଁ ଯାହାର ଅଭିମାନ ଓ ଦୃଢ଼ ପ୍ରତିଜ୍ଞା ଅଛି ମାତ୍ର ଅନ୍ୟପ୍ରତି ଈର୍ଷ୍ୟା ନାହିଁ, ସେ ଉନ୍ନତ କରିପାରେ । ନେପୋଲିଅନ୍ ସେଥିର ଉଦାହରଣ ଅଟନ୍ତି । "ଅଭିମାନ ଓ ଦୃଢ଼ ପ୍ରତିଜ୍ଞା ତାଙ୍କର ବାଲ୍ୟ ଚରିତ୍ରର ପ୍ରାଧାନ ଲକ୍ଷଣ" – ଏ ବିଷୟ ପ୍ରବନ୍ଧମାଳା ନାମକ ପୁସ୍ତକରେ ଉଲ୍ଲେଖ ଅଛି ।

୨୯

"ଆତ୍ମଜ୍ଞାନ ସର୍ବଜ୍ଞାନର ପରିମାପକ ଯନ୍ତ୍ର ଅଟେ ।" ଅର୍ଥାତ୍ ଆପଣାର ଜ୍ଞାନଦ୍ୱାରା ସମସ୍ତଙ୍କର ଜ୍ଞାନ ମାପି ହୁଏ ।

(ପ୍ରବନ୍ଧ ମାଳାର ଜାତୀୟ ସାହିତ୍ୟପ୍ରବନ୍ଧ)

୩୦

ସ୍ତ୍ରୀ ବୁଦ୍ଧିରେ ଯେଉଁମାନେ ପରିଚାଳିତ ହୋଇ କାର୍ଯ୍ୟ କରନ୍ତି, ସେମାନେ ଗଧ ଓ କୁକୁର ସଙ୍ଗେ ସମାନ ଅଟନ୍ତି । ଏହା ଭାଗବତରେ ବର୍ଣ୍ଣିତ ଅଛି । କଥାରେ ଅଛି – ସ୍ତ୍ରୀ ବୁଦ୍ଧିରେ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁ ଖଣ୍ଡିଆ ।

୩୧

ଖଣ୍ଡିଏ ଅଳଂକାରର ଧାତୁକୁ ଯେପରି ଆଉଟି, ପିଟି, ଯନ୍ତ୍ର ସାହାଯ୍ୟରେ ଟାଣି ତାର କରି, କାଟି, ଯୋଡ଼ି,ନିଆଁରେ ପୋଡ଼ି,ଢାଳି, ଘଷି, ମାଜିଲେ ସୁନ୍ଦର ହୁଏ, ସେହିପରି ଯେଉଁ ବ୍ୟକ୍ତି କଷ୍ଟ ସହି ଦୁଃଖ କରେ ସେ ଧନବାନ୍ , ଗୁଣବାନ୍ ହୁଏ । ଆରବ ଉପନ୍ୟାସର ସିନ୍ଧୁବାଦ ନାବିକର ସାତଥର ଦୁଃଖ ଓ କଷ୍ଟ ସହିତ ସମୁଦ୍ର ଯାତ୍ରା ଉଦାହରଣ ଅଟେ ।

୩୨

ସାଆନ୍ତାଣୀ ( ଗୃହିଣୀ ) କୁ ତ୍ୟାଗ କରି ଦାସୀକୁ ଆଦର କରିବା ଅନୁଚିତ ଅଟେ । (ବ୍ରଜବିହାରୀ)

୩୩

ଗୁରୁଜନ ବାକ୍ୟ ଲଂଘନ କଲେ ଅମଙ୍ଗଳ ହୁଏ । ମହାରାଜ ଯଯାତି ଶୁକ୍ରାଚାର୍ଯ୍ୟଙ୍କ କଥା ଲଙ୍ଘନ କରି କଷ୍ଟ ପାଇଥିଲେ । (ମହାଭାରତ ଆଦିପର୍ବ)

୩୪

ପିତୃଆଜ୍ଞା ପାଳନ ନ କଲେ ଦୁଃଖ ପାନ୍ତି । ଯଯାତିଙ୍କ ପୁତ୍ରମାନେ ପିତୃଆଜ୍ଞା ପାଳନ ନ କରି ରାଜ୍ୟ ସୁଖରୁ ବଞ୍ଚିତ ହୋଇଥିଲେ । ଏହା ମଧ୍ୟ ଲୋକାଚାରରେ ଦେଖାଯାଏ । (ମହାଭାରତ ଆଦିପର୍ବ)

୩୫

ପୁତ୍ର ସୁକାର୍ଯ୍ୟ କଲେ ପୁତ୍ର, କୁକାର୍ଯ୍ୟ କଲେ ମୂତ୍ର, କାରଣ ପୁତ୍ର ଓ ମୂତ୍ର ଏକ ପଥରୁ ନିର୍ଗତ ହୁଅନ୍ତି ।

୩୬

ଝିଅ ସୁ ହେଲେ ଘିଅ ପରି ଆଦୃତ ହୁଅନ୍ତି; କୁ ହେଲେ ଗୁହପରି ଗନ୍ଧାନ୍ତି ।

୩୭

ଯେଉଁମାନେ ଅଙ୍ଗରେ ବହୁ ଛପା ଓ ତିଳକ ଲଗାଇ ମାଳ ଜପି ଭକ୍ତିଭାବ ବାହାରକୁ ଦେଖାନ୍ତି, ସେମାନଙ୍କର ଭିତରେ ଅନେକ ପାପ ଥାଏ, ସେମାନେ ଅବିଶ୍ୱାସୀ ଅଟନ୍ତି । "କରନ୍ତି ଅଙ୍ଗେ ବହୁତ ଛାପ, କେହି ନଜାଣେ ଭିତର ପାପ, ଚମତ୍କାରକ ପଟ ପରସ୍ତେ ପ୍ରତ୍ୟକ୍ଷ ଦିଶେ ସେ ।"

(ରସକଲ୍ଲୋଳ ୧୬ଶ ଛାନ୍ଦ)

୩୮

—ବାଉଁଶବୁଦାରୁ ଉପଯୁକ୍ତ ପୁଆ ନେଇ ଅନ୍ୟତ୍ର ଲଗାଇ ଯତ୍ନ କଲେ ସେ ଯେପରି ସ୍ୱତନ୍ତ୍ର ବାଉଁଶ ବୁଦା ହୁଏ, ସେହିପରି କୌଣସି ବ୍ୟକ୍ତି ସୁବିଧା ପାଇଲେ ଆପଣା ମଧ୍ୟରୁ ଉପଯୁକ୍ତ ବ୍ୟକ୍ତିମାନଙ୍କୁ ନେଇ ଯତ୍ନ କରି ସେମାନଙ୍କ କର୍ମକ୍ଷମ କରିବ ।

୩୯

କ୍ରୋଧର ଅଧୀନ ହୋଇ ହଠାତ୍ କୌଣସି କାର୍ଯ୍ୟ କରିବ ନାହିଁ । ଯଦି କର ତେବେ ପରେ ଅନୁତାପ କରିବାକୁ ହେବ ।

୪୦

ସ୍ତ୍ରୀ ଲୋକମାନଙ୍କର ବା ପିଲାମାନଙ୍କର କୌଣସି ପଦାର୍ଥ ବ୍ୟବହାର କରିବ ନାହିଁ । କି'ବା ସେମାନଙ୍କର କୌଣସି ସଉଦା ଖାଇବ ନାହିଁ । ସେମାନେ ସଂସାରର ନେତା ହୋଇଥିଲେ ସେମାନଙ୍କ ସଙ୍ଗେ ସମ୍ପର୍କ ରଖିବ ନାହିଁ । ଶାସ୍ତ୍ରରେ ଅଛି:— ଯେଉଁଠାରେ ବାଳ ନାୟକ, ସ୍ତ୍ରୀ ନାୟିକା, ବହୁ ନାୟକ—ସେଠାରେ ବ୍ୟବହାର କରିବ ନାହିଁ ।

୪୧

ହରି ଓ ହର—ହରି ବଡ଼ ଲୋକ ଓ ହର ଦରିଦ୍ର । ଯେପରି ଦରିଦ୍ର ବଡ଼ ଲୋକ ଠାରେ ସର୍ବଦା ରହି ତାହାର ଗୁଣ କୀର୍ତ୍ତନ କରେ, ସେହିପରି ହର ସର୍ବଦା ହରିଙ୍କର ଗୁଣ ଗାନ କରନ୍ତି ।

୪୨

ହରଙ୍କର ଅସ୍ତ୍ର ତ୍ରିଶୂଳ । ସେ ଭସ୍ମାକୃତ, ହାଡ଼ ମାଳାରେ ବିଭୂଷିତ,

ମାଦକ ଦ୍ରବ୍ୟର ପକ୍ଷପାତୀ ହୋଇ ଶ୍ମଶାନରେ ବାସ କରି ବାଘାମ୍ବର ବେଶରେ ଭୂତମାନଙ୍କ ସହ ବୁଲନ୍ତି । ସେହିପରି ଯାହାର ଘରେ ଡାକିନି ମତ, ତାହାର ଘରର ଅବସ୍ଥା ଏହିପରି ଖରାପ ହୋଇ ନଷ୍ଟ ହୁଏ ଏବଂ ପରିବାର ବର୍ଗ କ୍ରମେ ମାଦକ ଦ୍ରବ୍ୟର ଆଶ୍ରା କରି ଦରିଦ୍ରତାକୁ ଲଭି ଛିଣ୍ଡା ଲୁଗା ପିନ୍ଧି ଅନାହାରରେ ବୁଲି ଅଳ୍ପ ସମୟରେ ନଷ୍ଟ ହୁଅନ୍ତି ।

୪୩

ସଂସାରର ଉପକାର ପାଇଁ ଯେ ନିଜକୁ ନିୟୋଗ କରେ ସେ ବୃକ୍ଷଭି ପରି ନିରାଶ୍ରୟଭାବେ ସଂସାର ଲୋକମାନଙ୍କ ଠାରୁ ଅଯତ୍ନ ବ୍ୟବହାର ପାଏ । ସେଥିର ଉଦାହରଣ ସ୍ୱରୂପ ବୁଦ୍ଧଦେବ, ଯିଶୁ, କୃଷ୍ଣ, ମହମ୍ମଦ ଓ ମହାତ୍ମା ଗାନ୍ଧି ପ୍ରଭୃତି ।

୪୪

ଯେପରି କୌଣସି ବ୍ୟକ୍ତିର ପିଚ୍ଛିଳ ପଥରେ ଗୋଡ଼ ଖସି ଗଲେ ସେ ବାରଂ ବାର ପଡ଼ି ଆଘାତପ୍ରାପ୍ତ ହୁଏ, ସେହିପରି କୌଣସି ବ୍ୟକ୍ତି ନଷ୍ଟ ପଥରେ ପଡ଼ି ଯଦି ସାବଧାନ ନହୁଏ, ତେବେ ସେ ଶେଷରେ ଧ୍ୱଂସ ହୁଏ ଓ ବୃକ୍ଷ ମାନଙ୍କରୁ ଡାଳ ଭାଙ୍ଗିଲେ ବା ବୃକ୍ଷ ଭାଙ୍ଗିଲେ ଯେପରି ଅନ୍ୟ ବୃକ୍ଷକୁ ଆଘାତ କରେ କିଂବା ନଷ୍ଟ କରେ, ସେହିପରି ନଷ୍ଟବ୍ୟକ୍ତି ସଂସର୍ଗରେ ରହିଲେ କୌଣସି ପ୍ରକାର କ୍ଷତଗ୍ରସ୍ତ ହେବ । ଯଦି ସାବଧାନ ନ ହୁଅ ତେବେ ପୂର୍ଣ୍ଣ ମାତ୍ରାରେ ନଷ୍ଟ ହେବ ।

୪୫

ଶରୀର ରକ୍ଷା ପାଇଁ ଯେପରି ଖାଦ୍ୟ ଆବଶ୍ୟକ, ସେହିପରି ବାସଗୃହ ମଧ୍ୟ ଆବଶ୍ୟକ । ଉତ୍ତମ ପାଚକ ଦ୍ୱାରା ଉତ୍ତମ ଖାଦ୍ୟ ପ୍ରସ୍ତୁତ କରି ଆହାର ନ କଲେ ଯେପରି ଅପକାର ହୁଏ, ସେହିପରି ଉତ୍ତମଶାସ୍ତ୍ରଜ୍ଞ ଦ୍ୱାରା ବିଧି-ନିୟମ

ଅନୁସାରେ ବାସ ଗୃହ ପ୍ରସ୍ତୁତ ନ କଲେ ଅମଙ୍ଗଳ ହୁଏ । ଏହା "ଭାରତୀୟ ଶିଳ୍ପ" ନାମକ ପୁସ୍ତକରେ ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି । ଏହା ମଧ୍ୟ ପରୀକ୍ଷିତ ଅଟେ ।

୪୬

ବନ୍ଧୁ ନିକଟରେ ଋଣ କିଂବା ବାସ କରିବ ନାହିଁ । "ନ କରିବୁ ବନ୍ଧୁ ନିକଟରେ ଋଣ, ନ କରିବୁ ବନ୍ଧୁ ନିକଟରେ ବାସ"—ଏ ଗୋଟିଏ ପ୍ରାଚୀନ ଉକ୍ତି । ଏହା ଦ୍ୱାରା ବନ୍ଧୁତା ରହେ ନାହିଁ ।

୪୭

ଯେ ନିଜ ଶକ୍ତି ଦ୍ୱାରା ଚଳେ ସେ ଉତ୍ତମ, ଯେ ପିତୃ ସମ୍ପତ୍ତି ଦ୍ୱାରା ଚଳେ ସେ ମଧ୍ୟମ । ଯେ ମାତୁଳ ସମ୍ପତ୍ତିରେ ଚଳେ ସେ ଅଧମ ଓ ଯେ ଶ୍ୱଶୁର ସମ୍ପତ୍ତିରେ ପ୍ରତିପାଳିତ ହୁଏ, ସେ ଅଧମାଧମ ଅଟେ । ଏହା ଶାସ୍ତ୍ରୋକ୍ତି ଅଟେ ।

୪୮

ଯୌବନ, ଧନ, ବିଦ୍ୟା ଓ କ୍ଷମତା ପ୍ରତ୍ୟେକଟି ଗୋଟିଏ ଗୋଟିଏ ନିଶା । ଏଥିରୁ କେତୋଟି ବା ସବୁଗୁଡ଼ିକ ଏକତ୍ର ହେଲେ ଅତି ଭୟଙ୍କର ହୁଅନ୍ତି । ଏଥିରେ ସାବଧାନ ନ ହେଲେ ନଷ୍ଟ ହେବାକୁ ହୁଏ । କାଦମ୍ବରୀ ଉପାଖ୍ୟାନରେ ଶୁକନାଶନ୍ ମନ୍ତ୍ରୀ ଚନ୍ଦ୍ରାପୀଡ ରାଜକୁମାରଙ୍କୁ ଯେଉଁ ଉପଦେଶ ଦେଇ ଅଛନ୍ତି—ତାହା ହୃଦୟଙ୍ଗମ କରି ସାବଧାନ ହେବ ।

୪୯

ଆପେ ଆପଣାର ଗୁରୁ ହୋଇ କାର୍ଯ୍ୟ ନ କଲେ ଅନ୍ୟର ଉପଦେଶ ଦ୍ୱାରା ଫଳ ହୁଏ ନାହିଁ, କାରଣ ଉପଦେଶ ଶୁଣି ଯଦି କାର୍ଯ୍ୟ ନ କରି ଓ

ନିଜର ଅଭିଭାବକ ନିଜେ ନ ହୁଅ,ତେବେ ଉପଦେଶ ଶୁଣିବାର ଫଳ କଣ ?

୫୦

ସୁନାରେ ଜଡ଼ଉ କାର୍ଯ୍ୟ କଲେ ବା ହୀରାଦାନ୍ତରେ ସୁନା ଗ୍ରନ୍ଥଣି କଲେ, ଯେପରି ସୁନ୍ଦର ଓ ମୂଲ୍ୟବାନ୍ ହୁଏ, ସେହିପରି ଯେଉଁ ବ୍ୟକ୍ତି ଆପେ ଆପଣାର ଗୁରୁ ହୋଇ କାର୍ଯ୍ୟ କରୁଥାଏ, ସେ ଯଦି ଅନ୍ୟର ସଦୁପଦେଶ ପାଏ, ତେବେ ସେ ଉପରୋକ୍ତ ସୁନା ଓ ହୀରଦାନ୍ତ ପରି ମାନ୍ୟ ଗଣ୍ୟ ହୁଏ ।

୫୧

ଭାରବାହୀ, ପଶୁ, ସ୍ତ୍ରୀ ଲୋକ, ଗାଡ଼ି (ଚକ୍ରୀ), ରାଜା, ମାନ୍ୟବ୍ୟକ୍ତି, ବୟୋଽଧିକ ବ୍ୟକ୍ତି, ରୁଗ୍ଣ, ଏମାନଙ୍କୁ ସମସ୍ତଙ୍କର ପଥ ଛାଡ଼ି ଦେବା ଉଚିତ ।

୫୨

ମୃତ୍ତିକା ଖରା ବର୍ଷା ଖାଇ ସବୁପ୍ରକାର କଷ୍ଟ ସହେ ଓ ସେହି ହେତୁ ତାହା ଶରୀର ଉପରେ ବହୁ ରାଜପ୍ରାସାଦ ଥିବେ । ଯେ ସବୁ ସହିପାରେ ସେ ବଡ଼ ହୁଏ, ଅତଏବ ସହିବା ଶକ୍ତି ସବୁଠାରୁ ବଡ଼ ଅଟେ ।

୫୩

କୌଣସି ମନ୍ଦକାର୍ଯ୍ୟ କରି ଯଦି ଅନ୍ତରର ସହିତ ସରଳ ଭାବରେ ଅନୁତାପ କର ଓ କ୍ଷମା ପ୍ରାର୍ଥନା କର, ତେବେ ସେଥିରୁ ମୁକ୍ତ ହେବ—ଏହା ଶାସ୍ତ୍ରୋକ୍ତି ଅଟେ । ( ମନୁସଂହିତା )

୫୪

ନୀଚ କାର୍ଯ୍ୟରୁ ବା ଦାସ କାର୍ଯ୍ୟରୁ ପରେ ବଡ଼ ହେଲେ ମଧ୍ୟ ବଂଶର

ଗୌରବ ନ ବଢ଼ି ଚିରକାଳ କଳଙ୍କ ରହେ । ପାଣ୍ଡବମାନେ କୁରୁ ସଭାରେ ନିଜକୁ ଦାସରୂପେ ହାରିବାରୁ କୌରବମାନେ ଦ୍ରୌପଦୀଙ୍କୁ କୁରୁସଭାରେ ଅବମାନନା କଲେ । ସତୀ ନାରୀଙ୍କୁ କ୍ଷୁବ୍ଧ କରାଇ ଥିବାରୁ ବିଦୁରଙ୍କ ପରାମର୍ଶ ଅନୁସାରେ ଧୃତରାଷ୍ଟ୍ର ଦ୍ରୌପଦୀଙ୍କୁ ବର ଯାଚିଲେ । ଦ୍ରୌପଦୀ ପାଣ୍ଡବମାନଙ୍କର ଦାସତ୍ୱରୁ ମୁକ୍ତି ସର୍ବାଗ୍ରେ ପ୍ରାର୍ଥନା କଲେ । ଧୃତରାଷ୍ଟ୍ର "ତଥାସ୍ତୁ" କହି ଦ୍ରୌପଦୀଙ୍କୁ ଶାନ୍ତ କରିଥିଲେ । ଅତଏବ ନୀଚ କାର୍ଯ୍ୟ କଲେ ବଳ ଓ ସାହସ କମିଯାଏ । [ ମହାଭାରତ ସଭାପର୍ବ ]

୫୫

ଯେଉଁମାନେ ନିଜର ଶକ୍ତି ନ ଥିବା ଅବସ୍ଥାରେ ଅନ୍ୟର ଶକ୍ତିରେ ବା ପୂର୍ବ ପୁରୁଷଙ୍କ କାର୍ଯ୍ୟରେ ଗର୍ବିତ ହୋଇ ଉନ୍ନତିର ଚେଷ୍ଟା ନ କରନ୍ତି, ସେମାନଙ୍କର ଅଧଃପତନ ନିଶ୍ଚିତ ଅଟେ ।

୫୬

ସ୍ତ୍ରୀ ସ୍ୱାମୀଙ୍କ ବାକ୍ୟ ଲଙ୍ଘନ କରି କାର୍ଯ୍ୟ କଲେ ଦମୟନ୍ତୀଙ୍କ ପରି ବିପଦଗ୍ରସ୍ତ ହୁଅନ୍ତି ।

୫୭

ଜଣେ ବ୍ୟକ୍ତିର ନେତୃତ୍ୱରେ ଯେ କୌଣସି କାର୍ଯ୍ୟ କରିବ ସେଥିରେ ସୁଫଳ ଫଳିବ । ସେ ଯାହା କହିବ, ତାହା ବିନା ଯୁକ୍ତିତର୍କରେ ପ୍ରତିପାଳନ କରିବ । ସେନାପତିର ଆଦେଶ ପାଳି ସୈନ୍ୟମାନେ କାର୍ଯ୍ୟ କଲେ ଜୟ ହୁଏ । ଏହିପରି ପ୍ରତ୍ୟେକ ପ୍ରଧାନ ବ୍ୟକ୍ତିର ବାକ୍ୟକୁ ଲଙ୍ଘନ ନ କରି କାର୍ଯ୍ୟ କଲେ ନିଶ୍ଚୟ କୃତକାର୍ଯ୍ୟ ହେବ । ମହାତ୍ମା ଗାନ୍ଧିଙ୍କ ବାକ୍ୟକୁ ଅବହେଳା କରି କେତେଲୋକ ବଡ଼ ହେବା ମାନସରେ ନାନା ମତରେ ଦଳ ଗଠନ କରିବାରୁ ମହାତ୍ମାଙ୍କ ଉଦ୍ଦେଶ୍ୟ ଆଶୁ ସଫଳ ହେଲା ନାହିଁ । ଶରୀରର ଗୋଟିଏ

ମଥା ହୋଇଥିବାରୁ ସେ ଚଳୁଅଛି । ରାଜକାର୍ଯ୍ୟ ବିଭାଗରେ ଗୋଟିଏ ୨ ମଥା ଥିବାରୁ ବିଭାଗମାନ ଚଳୁଛି । ଯେଉଁ ଅନୁଷ୍ଠାନ ବା କାର୍ଯ୍ୟରେ ବହୁ ମଥା ତାହା ସର୍ବଦା ଅପରିପୂର୍ଣ୍ଣ ରହେ । ଆଜି କାଲି ଯୁଗରେ ସମସ୍ତେ ବଡ଼ ହୋଇ ନାମ କାଢ଼ିବାକୁ ଇଚ୍ଛା କରନ୍ତି । ମାତ୍ର ନାମ ବାହାରିବା କାର୍ଯ୍ୟ ପ୍ରାୟ କରନ୍ତି ନାହିଁ ।

୫୮

ବଚନକୁ ଭ୍ରଷ୍ଟ କଲେ ଅର୍ଥାତ୍ ଅସତ୍ୟ କହିଲେ ନିଜର ଉନ୍ନତି ବୃକ୍ଷରେ କୁଠାରାଘାତ କଲ ବୋଲି ମଣିବ ଅର୍ଥାତ୍ ତୁମ୍ଭର ସବୁ ସରିଗଲା ।

୫୯

ବିନୟ, ନମ୍ରତା, ସୌଜନ୍ୟ ଓ ସତ୍ୟକଥନ ଲୋକକୁ ଉନ୍ନତି ପଥକୁ ବଳପୂର୍ବକ ନେଇଯାଏ । ଏହା ଶାସ୍ତ୍ରୋକ୍ତି ଅଟେ । ଏହି ବଳରେ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ପୁରୀର ସାର୍ବଭୌମ ପଣ୍ଡିତ ଓ କାଶୀର ଦିଗ୍ବିଜୟୀ ପଣ୍ଡିତଙ୍କୁ ଜୟ କରିଥିଲେ ।

୬୦

କାହାରିକୁ ଲକ୍ଷ୍ୟ କରି କୌଣସି ବିଷୟରେ ଗର୍ବିତ ଭାବ ଦେଖାଇଲେ ଶୀଘ୍ର ପତନ ହୁଏ ଓ ମଧ୍ୟ ବ୍ରହ୍ମ ଅଭିଶାପ ପାପ ହୁଏ ।

୬୧

ବୟୋଧିକ ବ୍ୟକ୍ତି, ବୃକ୍ଷ, ବୃଷଭ, ଗୋରୁ, ଉପକାରୀ ବ୍ୟକ୍ତି ସର୍ବଦା ମାନନୀୟ ଓ ନମସ୍ତୁତ୍ୟ ଅଟନ୍ତି । ଭ୍ରମରେ ଅବହେଳା କରିଥିଲେ ମଧ୍ୟ ପରେ ମନେ ମନେ ମାନ୍ୟ କରି ସେମାନଙ୍କ ଉଦ୍ଦେଶ୍ୟରେ ନମସ୍କାର କରିବ ।

ବୃଷଭକୁ ଯେ ସ୍ଥାନରେ ଦେଖିବ "ସ୍ୱସାରୋପକାଶ୍ଚ' କହି ନମସ୍କାର କରିବ ।

୬୨

କୌଣସି କାର୍ଯ୍ୟରେ କୌଣସି ସ୍ଥାନକୁ ଯିବା ସମୟରେ ଶୁଭ ଲକ୍ଷଣ ଦେଖିଲେ କାର୍ଯ୍ୟ ସିଦ୍ଧ ହୁଏ । ବାଦ୍ୟ, ଶଙ୍ଖସ୍ୱନ, ପୂର୍ଣ୍ଣକୁମ୍ଭ, ଅବିବାହିତା କୁମାରୀ, ବୃଷଭ, ସଦ୍ୟସ୍ନାତା, ଶଙ୍ଖଚିଲ, ଭଦଭଦଳିଆ ପକ୍ଷୀ, କୋକିଳ ସ୍ୱନ—ଏ ଗୁଡ଼ିକ ଶୁଭ ଲକ୍ଷଣ । ଭିକ୍ଷୁକ, ଅନ୍ଧ, କଣା, ବିକଳାଙ୍ଗ, ବିଧବାସ୍ତ୍ରୀ-କ୍ରନ୍ଦନଧ୍ୱନି, କଳହ, ବାଧାସୂଚକ ସୂଚନା, ଗୈରିକବସ୍ତ୍ରଧାରୀ—ଏଗୁଡ଼ିକ ଅଶୁଭ ଚିହ୍ନ ଅଟେ । ଏହା ଶାସ୍ତ୍ରୋକ୍ତି ଅଟେ ।

୬୩

୧—ଦେବତାଙ୍କ ଛାୟା, ୨—ଗୁରୁଜନମାନଙ୍କ ଛାୟା, ୩—ଗୋରୁ ଛାୟା ଡେଇଁ ଯିବା ନିଷିଦ୍ଧ ଅଟେ । ୪—ଗୋରୁ ବନ୍ଧା ହୋଇଥିଲେ ଦଉଡ଼ି ଡେଇଁବ ନାହିଁ; ୫—ଗୋରୁ କାହାର କିଛି ଖାଉଥିଲେ ଗୃହସ୍ୱାମୀଙ୍କୁ ଡାକିବ ନାହିଁ; ୬—ବାଛୁରୀ ପିଇ ଯାଉଥିଲେ ଡାକିବ ନାହିଁ । ଏହା ଶାସ୍ତ୍ର-ନିଷିଦ୍ଧ ଅଟେ । ବହୁଜନାକୀର୍ଣ୍ଣ ସ୍ଥାନରେ ଗୁରୁଜନ ଓ ଗୋଛାୟା ଡେଇଁଲେ ଦୋଷାବହ ନୁହେ । [୧, ୪, ୫, ୬—ବିଷ୍ଣୁ ସଂହିତା ]

୬୪

ପିତୃଶ୍ରାଦ୍ଧ ଦିବସର ସନ୍ଧ୍ୟାରେ ଗାଈ ଦୁହିଁବ ନାହିଁ । ରାତିରେ ଦକ୍ଷିଣକୁ ଓ ଦିବସରେ ସୂର୍ଯ୍ୟଙ୍କର ବିପରୀତ ଦିଗକୁ ମୁଖ କରି ଉଚ୍ଚସ୍ଥାନରେ ବସି ମଳମୂତ୍ର ତ୍ୟାଗ କରିବ । (ବିଷ୍ଣୁ ସଂହିତା) କାରଣ ମଳ ମୂତ୍ର ତ୍ୟାଗ ସମୟରେ କୁନ୍ଥାଇବା ଯୋଗୁଁ ଚକ୍ଷୁରେ ଜୋର ପଡ଼େ । ଯଦି ତହିଁ ସଙ୍ଗରେ ସୂର୍ଯ୍ୟଙ୍କର ପ୍ରଖର ରଶ୍ମି ଯୋଗ ହୁଏ, ତେବେ ଚକ୍ଷୁର ଜ୍ୟୋତି କମିଯାଏ ।

୨୫

ଯେପରି ବର୍ଷା ଦିନେ ସ୍ତ୍ରୀଲୋକ ମାନେ ଝୁଣ୍ଟ କରିବାକୁ ଚପୁଡ଼ି ଝୁଣ୍ଟ ଦେବା ସ୍ଥାନମାନଙ୍କରେ ଘଷି ଆଣିଲେ ସ୍ଥାନଟି ପରିଷ୍କାର ହୁଏ, ଅଥଚ ଶୁଖିଲା ରହେ, ସେହିପରି ବର୍ଷା ଦିନରେ କିଂବା ଥଣ୍ଡା ଦିନରେ ସୁବିଧା ନ ଦେଖିଲେ ସର୍ବାଙ୍ଗ ସ୍ନାନ କରିବ ନାହିଁ । ପୋଛି ହେବ, ଅନ୍ୟଥା ରୋଗର କାରଣ ଅଟେ ।

୨୬

ଚୂଲିକୁ ନ ଲିପି ବାରିବାର ସେଥିରେ ଅଗ୍ନି ଜାଳିଲେ ଯେପରି ଶୀଘ୍ର ନଷ୍ଟ ହୁଏ, ସେହିପରି ସୁସ୍ଥ ଶରୀରରେ ସ୍ନାନ ନ କଲେ ଶୀଘ୍ର ରୋଗ ହୋଇ ଶରୀର ନଷ୍ଟ ହୁଏ । ସନ୍ତସନ୍ତିଆ ଅବସ୍ଥାରେ ଚୂଲି କମ୍ପା ସ୍ଥାନକୁ ଲିପିଲେ ଯେପରି ଖରାପ ହୁଏ,ସେହିପରି ଦେହ ଅସୁସ୍ଥ ଥିଲେ ଯଦି ସ୍ନାନକର, ତେବେ ଶରୀର ନଷ୍ଟ ହୁଏ ।

୨୭

ଶୁଖିଲା ଜାଳ ହୋଇଥିଲେ ସୁଦ୍ଧା ଯଦି ଚୂଲିରେ ବହୁ ପରିମାଣରେ ଏକଥରେ ଜଳାହୁଏ, ତେବେ ସେଗୁଡ଼ିକ ଉତ୍ତମରୂପେ ନ ଜଳି ଯେପରି ଆଶାଗତ ଅଙ୍ଗାର ହୁଏ, ସେହିପରି ସୁ ସ୍ଥକାୟ ବ୍ୟକ୍ତି ଘନଘନ ଲଘୁ ଆହାର କଲେ ମଧ୍ୟ ଶରୀର ଅସୁ ସ୍ଥ ହୁଏ ।

୨୮

ପରସ୍ତ୍ରୀ ଓ ପର ପୁରୁଷ ପରସ୍ପର ଗମନାଗମନ ଶାସ୍ତ୍ର-ନିଷେଧ ଥିଲେ ସୁଦ୍ଧା ଏ ବିଷୟର କାରଣ ବୁଝିବା ନିମନ୍ତେ ପଚାରିବାରୁ ମୟୂରଭଞ୍ଜର ରାଜ-କବିରାଜ ପୁରୀଜିଲା ନିବାସୀ ଭଗବାନ ରାମଗୁରୁ ମୋତେ ଯାହା ବୁଝାଇ ଥିଲେ, ତାହା ପ୍ରକୃତ ଥିବାର ଜାଣି ଏଠାରେ ଉଲ୍ଲେଖ କଲି । ପୁରୁଷର

ପରସ୍ତ୍ରୀ ଗମନ ଦ୍ୱାରା ଯଦି ସନ୍ତାନ ଉତ୍ପତ୍ତି ହୁଏ, ତେବେ ସେ ସ୍ୱେଚ୍ଛାଧୀନ ହୋଇ ପୁଣି କୋଳାଗତ ହୋଇ ପାରେ ନାହିଁ କିଂବା ଏକତ୍ର ଆହାର କରି ପାରେ ନାହିଁ । ଏହି ଦୋଷରୁ ନିଜକୁ ଘୃଣାର ପାତ୍ର ମନେ କରାଯାଏ । ସ୍ତ୍ରୀ ଯଦି ପର ପୁରୁଷଦ୍ୱାରା ସନ୍ତାନ ଜନ୍ମାଏ, ତେବେ ଉତ୍ପନ୍ନ ସନ୍ତାନ ସମ୍ପତ୍ତିର ଅଧିକାରୀ ହୁଏ । ଆହୁରି କେବଳ ବଡ ପୁଅ ସମ୍ପତ୍ତିର ପୂର୍ଣ୍ଣ ଅଧିକାରୀ ହେବାର ପ୍ରଥା ଥିଲେ, ପରପୁରୁଷ ସଂସର୍ଗରେ ବଡ ପୁଅ ଜନ୍ମିଲେ ସେ ସମ୍ପତ୍ତିର ପୂର୍ଣ୍ଣ ଅଧିକାରୀ ହେବ । ନିଜ ଔରସଜାତ ସନ୍ତାନ ସମ୍ପତ୍ତି ପାଇ ପାରିବ ନାହିଁ । ପ୍ରକୃତ ସ୍ୱାମୀର ସନ୍ତାନ ପଥର ଭିକାରୀ ହେବ । ଏହିଭଳି ପ୍ରତ୍ୟେକ କାରଣକୁ ବାହୁଲ୍ୟ ଭୟରେ ଶାସ୍ତ୍ରକାରମାନେ ସଂକ୍ଷେପରେ ଉଲ୍ଲେଖ କରି ଯାଇ ଅଛନ୍ତି । ଏହା ଶାସ୍ତ୍ରରେ ଅଛି । ( ଯାଜ୍ଞବଲ୍କ୍ୟସଂହିତା )

୬୯

ଯେ ଆପଣାକୁ ବଡ଼ ମନେ କରେ ସେ ନଗଣ୍ୟ ମଧ୍ୟରେ ଯାଏ, ଯେ ଆପଣାକୁ ଶ୍ରେଷ୍ଠ ମନେ କରେ ସେ ପ୍ରକୃତରେ ବଡ଼ ଅଟେ ଓ ହୁଏ । କଥାରେ କହନ୍ତି, "ଯେବେ ହେବୁ ବଡ଼ ତେବେ ସମସ୍ତଙ୍କ ଗୋଡ଼ତଳେ ପଡ଼ ।" ଚୈତନ୍ୟ ମହାପ୍ରଭୁ କାଶୀରେ ସମସ୍ତଙ୍କ ତଳେ ବସି ବଡ଼ ହେଲେ ଏବଂ ଦୁବ ଘାସ ନମ୍ର ହୋଇଥିବା ହେତୁ ବଡ଼ ଅଟେ ।

୭୦

ବିଷ୍ଠା ନିକଟରେ ଦୁର୍ଗନ୍ଧ କରେ, ଯେଉଁଠାକୁ ନିଆ ହୁଏ, ସେଠାରେ ଦୁର୍ଗନ୍ଧ କରେ; ଫୁଲ ନିକଟରେ ବାସେ, ଦୂରରେ ମଧ୍ୟ ବାସେ; ସେହିପରି ଦୁଷ୍ଟ ଲୋକକୁ ନିକଟରେ କେହି ଭଲ ପାଆନ୍ତି ନାହିଁ, ଦୂରକୁ ସେ ଗଲେ ମଧ୍ୟ ଘୃଣା କରନ୍ତି । ଉତ୍ତମ ବ୍ୟକ୍ତି କି ନିକଟରେ କି ଦୂରରେ ସବୁ ସମୟରେ ସମାନ ଆଦୃତ ହୁଏ ।

୭୧

ଯେ ପର ଦୁଃଖରେ ଦୁଃଖୀ ହୁଏ ସେ ପ୍ରକୃତରେ ସୁଖୀ ଓ ଯେ ଅନ୍ୟର

ମଙ୍ଗଳରେ ଆନନ୍ଦିତ ହୁଏ ସେ ପ୍ରକୃତ ସୁଖୀ ଅଟେ । ଯେଉଁ ବ୍ୟକ୍ତିର ଅନ୍ୟର ଅନିଷ୍ଟରେ ଆନନ୍ଦ ଜାତ ହୁଏ ସେ ବ୍ୟକ୍ତି ଓ ତାହାର ସନ୍ତାନ ସନ୍ତତିମାନେ ଚିରକାଳ ଅସୁଖୀ ହୁଅନ୍ତି ।

୭୨

କୌଣସି କ୍ଷତ ସ୍ଥାନକୁ କୁଣ୍ଡାଇଲେ ସେ ଯେପରି ବଢେ ଓ ଔଷଧ ଦେଲେ ଯେପରି କମେ, ସେହିପରି ଭଲ ମନ୍ଦ ଯେ କୌଣସି ବିଷୟକୁ ଆନ୍ଦୋଳନ କଲେ ବଢ଼େ । ଆନ୍ଦୋଳନ ନ କଲେ କମିଯାଏ ।

୭୩

ଗର୍ଜ୍ଜନକାରୀ ମେଘ ଯେପରି ବର୍ଷେ ନାହିଁ, ସେହିପରି ତର୍ଜ୍ଜନ ଗର୍ଜ୍ଜନ କରିବା ବ୍ୟକ୍ତି କିଛି କରି ପାରେ ନାହିଁ । ବୃଥାବକ୍ତୃତାକାରୀ ବ୍ୟକ୍ତି ମଧ୍ୟ କିଛି କରି ପାରନ୍ତି ନାହିଁ । ଯେଉଁ ବ୍ୟକ୍ତି ଧୈର୍ଯ୍ୟ ଧରି ବସି ରହିଥାଏ, ସେ ଅସାଧ୍ୟକୁ ସାଧନ କରିପାରେ । ରାଜନୈତିକ କ୍ଷେତ୍ରରେ ଗୁପ୍ତମନ୍ତ୍ରଣା ଦ୍ୱାରା ସମସ୍ତ କାର୍ଯ୍ୟ ହୁଏ । ମନୁ ମଧ୍ୟ କହି ଅଛନ୍ତି ରାଜନୈତିକ କାର୍ଯ୍ୟମାନ ଗୋପନରେ କରିବ । ପ୍ରକୃତରେ ଗୋପନରେ ପରାମର୍ଶ କରି କଲେ କାର୍ଯ୍ୟ ସିଦ୍ଧ ହୁଏ । ଲକ୍ଷ୍ୟ ସ୍ଥାନରେ ପହଞ୍ଚିବା ପାଇଁ ଗୁପ୍ତ ମନ୍ତ୍ରଣା କରିବ । ଏହା ପ୍ରତ୍ୟେକ ଦେଶର ରାଜନୈତିକ ପରିବର୍ତ୍ତନ କାରଣ ସ୍ୱରୂପ ଇତିହାସରେ ଦେଖାଯାଏ । ଶାସ୍ତ୍ରରେ ଅଛି :—"ଷଟ୍‌କର୍ଣ୍ଣେ ଭିଦ୍ୟତେ ମନ୍ତ୍ର" ଅର୍ଥାତ୍ ତିନି ଜଣ ଶୁଣିଲେ ବିଷୟଟି ଅବଶ୍ୟ ପ୍ରକାଶିତ ହୋଇ ପଡ଼େ ।

୭୪

ଧନୀ ବ୍ୟକ୍ତି ବଡ ନୁହେଁ, ଯାହାର ମନ ବଡ ସେହି ବ୍ୟକ୍ତି ପ୍ରକୃତରେ ବଡ ଅଟେ । ଗୁଣବାନ୍ ବ୍ୟକ୍ତି ଅପେକ୍ଷା ବୁଦ୍ଧିମାନ୍ ବ୍ୟକ୍ତି ବଡ଼ । ବୁଦ୍ଧି ନ ଥିଲେ ବିଦ୍ୱାନ୍ ବ୍ୟକ୍ତି ନଗଣ୍ୟ ହୁଅନ୍ତି ! "ବିଦ୍ୟା କିଂ କାର୍ଯ୍ୟଂ, ଯଦି ନାସ୍ତି ବୁଦ୍ଧିଃ ।" (ଚାଣକ୍ୟ)

୨୫

ଫୁଲ ଠାରୁ ଉଲ୍ଲାସ ଓ ପ୍ରୀତିଦାୟକ ଅନ୍ୟ କିଛି ନୁହେଁ । ଯଦି କୌଣସି ବ୍ୟକ୍ତି କୌଣସି କାର୍ଯ୍ୟରେ କୃତକାର୍ଯ୍ୟ ହୁଏ, ତେବେ ତାହାର ମନ ଫୁଲଠାରୁ ହାଲୁକା ହୁଏ ଓ ଆନନ୍ଦିତ ହୁଏ । କଠିନ ପରିଶ୍ରମ କଲା ପରେ ଯେଉଁ କାର୍ଯ୍ୟ ସଫଳ ହୁଏ, ସେଥିରୁ ଅପାର ଆନନ୍ଦ ଜାତହୁଏ, ଅର୍ଥାତ୍ ପାରିକ ଜାତକରି ହୁଏ ଯେଉଁ ଆନନ୍ଦ ତାହାକୁ 'ପାରିଜାତ' କହନ୍ତି । ସ୍ୱର୍ଗ ଅର୍ଥାତ ଶାନ୍ତି ଅଟେ । କୌଣସି ବ୍ୟକ୍ତି କୌଣସି କାର୍ଯ୍ୟରେ କୃତକାର୍ଯ୍ୟ ହେଲେ ସେ କ୍ଷଣକ ପାଇଁ ସ୍ୱର୍ଗ ଅର୍ଥାତ୍ ଶାନ୍ତି ଭୋଗ କରେ । ସେହି ସମୟର ଆନନ୍ଦକୁ "ପାରିଜାତ ପୁଷ୍ପ" କହନ୍ତି ।

୨୬

ଅଗିର ପୂର୍ଣ୍ଣିମାରେ ଅଗ୍ନି ପୂଜାକରି ଅଗି ଜାଳିବା ଓ ଦୋଳ ପୂର୍ଣ୍ଣିମାରେ ଘୃତେଇରୁ ବୁଲି ଅଗ୍ନି ପୂଜା କରି ତାହାର ଘରପାଖେ ବୁଲିବା (ମେଣ୍ଢାଘର ପୋଡ଼ିବା) ର କାରଣ ଏହି ଯେ, ଶ୍ରୀବୃନ୍ଦାବନରେ ଶ୍ରୀକୃଷ୍ଣଚନ୍ଦ୍ର ଶ୍ରୀମତୀ ରାଇ ବିନୋଦିନୀଙ୍କ ସହିତ ପଶା ଖେଳୁଥିବା ସମୟରେ ଚନ୍ଦ୍ରାବଳୀ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ନ ପାଇବାରୁ ଈର୍ଷ୍ୟାନ୍ୱିତ ହୋଇ ତାଙ୍କର ୨ଜଣ ସଖୀଙ୍କୁ ଶ୍ରୀମତୀ ରାଇ ବିନୋଦିନୀଙ୍କ ଶାଶୁ ଜଟିଳାଙ୍କ ନିକଟକୁ ପଠାଇ ଖବର ଦେଇ ତାଙ୍କୁ ଦେଖାଇବା ମାନସରେ ଅଣାଇ ବାଟରେ ଆସୁଥିବା ସମୟରେ ଶ୍ରୀମତୀଙ୍କର ଦୁଇ ସଖୀ କାହାର ଆସିବା ଭୟରେ ବାଟ ଜଗିଥିବାରୁ ଓ ସେମାନେ କୌଶଳ କରି ଜଟିଳାକୁ ଫେରାଇ ଦେବାର ଚେଷ୍ଟା କରିବାରୁ ଜଟିଳା କହିଲେ, ଫିଙ୍ଗ ଘରେ ହରିଣୀ ଚରଣୀ ହୋଇଛି, ମୁଁ ଦେଖିବାକୁ ଯାଉଛି—ଏକଥା କହି ନ ଫେରିବାରୁ ଏଣେ ସୁକୁମାରୀ ଏସମ୍ବନ୍ଧରେ ଜଣାଇ-ବାରୁ ପଶାଖେଳ ନଷ୍ଟହୋଇ ଶ୍ରୀକୃଷ୍ଣଚନ୍ଦ୍ର ଓ ଶ୍ରୀମତୀଙ୍କର ରସଭଙ୍ଗ ହେବାର ଜାଣି ବୃନ୍ଦାଦେବୀ ଅଗ୍ନି ଜାତ କରାଇ ବନ ପୋଡ଼ିବାରୁ ପୁର ଆଡ଼ୁ ଅଗ୍ନି ଆସି ଜଟିଳାଙ୍କ ଲୁଗାରେ ଲାଗିଲା । ତେଣୁ ସେ ବ୍ୟସ୍ତ ହୋଇ ଚନ୍ଦ୍ରା-ବଳୀଙ୍କ ସଖୀମାନଙ୍କୁ ବିରକ୍ତ ହେଲେ । ଏହି ସୁଯୋଗ ପାଇ ଶ୍ରୀମତୀଙ୍କର

ସଖୀମାନେ କହିଲେ, ଯଦି ପ୍ରକୃତରେ ଆମ୍ଭ ଘର ଏକସ୍ୱାମୀଭକ୍ତ ଓ ସତୀ ହୋଇଥିବେ, ତେବେ ଅଗ୍ନି ସଙ୍ଗେ ସଙ୍ଗେ ଶୀତଳ ହେବ। ଏହି କଥାରେ ଅଗ୍ନି ଶୀତଳ ହେଲା। ଜଟିଳା ନିଜ ବଧୂକୁ ପ୍ରଶଂସା କରି ଚନ୍ଦ୍ରାବଳୀଙ୍କ ସଖୀମାନଙ୍କ ଘୃଣା କଲେ ଓ ଘରକୁ ଫେରିଗଲେ । ଏଣେ ପଶାଖେଳ ନିର୍ବିଘ୍ନରେ ଶେଷ ହେଲା । ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଅଗ୍ନିକୁ ବର ଦେଇ ଥିବାରୁ ଫଗୁଣ ମାସରେ ଲୋକ ସାଧାରଣ ଅଗିନ୍ତି ପୂର୍ଣ୍ଣିମାରେ ଅଗ୍ନି ପୂଜା କରନ୍ତି ଓ ଦୋଳ ପୂର୍ଣ୍ଣିମାରେ ସ୍ୱୟଂ ଶ୍ରୀକୃଷ୍ଣ ଚନ୍ଦ୍ର ଅଗ୍ନି ପୂଜା କରନ୍ତି। (ବ୍ରଜ ବିହାର—୭ମ ବୋଲି)

୭୭

ସ୍ତ୍ରୀ, ଖେଳ, ମଦ୍ୟ, ବହୁଜନଏକତ୍ରିତ ସ୍ଥାନ, ଧନ ନିକଟରେ କାଳି ହୁଏ। (ଭାଗବତ)

୭୮

ଏକଗଛି ସପ୍ତଗଛ ହେବାର ପ୍ରବାଦ ଅଛି। ଏହା ଜଣେ ପଙ୍କୀର ସାବିତ୍ରୀ ନାମ୍ନୀ ସ୍ତ୍ରୀର ପ୍ରାର୍ଥନାରେ ହୋଇଥିଲା। (ବ୍ରଜବିହାର—୮ମବୋଲି)

୭୯

ବାଡ଼ବାନଳ—ଆଧୁନିକ ବୈଜ୍ଞାନିକମାନେ କହନ୍ତି, ସମୁଦ୍ରରେ ଥିବା ଆଗ୍ନେୟଗିରିମାନଙ୍କରୁ ଯେଉଁ ଅଗ୍ନି ବାହାରେ ତାହାକୁ କବିମାନେ ବାଡ଼ବାଗ୍ନି କହନ୍ତି; ମାତ୍ର ପୌରାଣିକ ମତରେ ଧୃତରାଷ୍ଟ୍ର ଯଜ୍ଞ ଅଗ୍ନି ଶାନ୍ତ କରି ନ ଥିବାରୁ ତହିଁରୁ ଦାବାନଳ ଜନ୍ମିଅଛି । (ମହାଭାରତ) କାଳୀସର୍ପକୁ ଦମନ ସମୟରେ କାଳୀୟ ହ୍ରଦରୁ କାଳୀୟ ବିଷ ଏକତ୍ର ହୋଇ ଦାବାଗ୍ନି ସୃଷ୍ଟି କରି ବନ ପୋଡ଼ି ଅବଶେଷରେ ସମୁଦ୍ରରେ ପଶି ବାଡ଼ବାଗ୍ନିର ସୃଷ୍ଟି କରିଅଛି।
[ବ୍ରଜବିହାର]

୮୦

କୌଣସି ବିଷୟରେ ଆଗୁଆ ହେବ ନାହିଁ। ଆଗକୁହା, ଆଗଚଲା,

ଆଗଣିଆ ହେବ ନାହିଁ । ଆଗଚଲା ହେଲେ ବାଟରେ ସାପ, କଣ୍ଟା, ଖାଲ ଥିଲେ ଆଘାତ ପାଇବ । ଖାଦ୍ୟରେ ବିଷ ଥିଲେ ଆଗେ ଖାଇଲେ ଠକିବ, ସମସ୍ତ କଥା ନ ଶୁଣି ବିବେକ ପ୍ରୟୋଗ ନ କରି ଆଗକୁହା ହେଲେ ମଧ୍ୟ ଠକିବ ।

୮୧

ଯେଉଁମାନଙ୍କର ବାହାର ପରିଚ୍ଛଦ ବେଶି ଆଡମ୍ବରପୂର୍ଣ୍ଣ, ସେମାନଙ୍କର ଭିତର ଆଚାର ତଥା ବ୍ୟବହାର ବଡ଼ କଦର୍ଯ୍ୟ ଅଟେ ।

୮୨

ଅତି ବର୍ଦ୍ଧନଶୀଳତା ପତନର ଲକ୍ଷଣ । କାହାରକୁ ଉପହାସ କରିବ ନାହିଁ, ଅବଜ୍ଞା କରିବ ନାହିଁ । ପୁସ୍ତକ ଅପେକ୍ଷା ପ୍ରକୃତିକୁ ଲକ୍ଷ୍ୟ କଲେ ଅଧିକ ଶିକ୍ଷା ହୁଏ ।

୮୩

ବୟୋଧିକ ବ୍ୟକ୍ତିକୁ ଉପହାସ କରି ତାଙ୍କ ନିଷିଦ୍ଧ କାର୍ଯ୍ୟ କଲେ ବିପଦରେ ପଡ଼ିବାକୁ ହେବ । [ହିତୋପଦେଶ—କପୋତ ପକ୍ଷୀର ଗଳ୍ପ]

୮୪

ବର୍ତ୍ତମାନ ନିଜର ନ ଥିଲେ ଯେ କୌଣସି ବିଷୟ ବଂଶରେ ପୂର୍ବ ଥିଲା ବା ଅଛି ବୋଲି କହି ଅହଂକାର କରିବା ମୂର୍ଖତା ଅଟେ । ନିଜେ ମୂର୍ଖ ଓ ନଗଣ୍ୟ ହୋଇ ପୂର୍ବ ପୁରୁଷ ବା ଆତ୍ମୀୟଙ୍କର ପାଣ୍ଡିତ୍ୟରେ ଗର୍ବ ଶୋଭନୀୟ ନୁହେଁ ।

୮୫

କୌଣସି ଉପକାରୀ, ତା ହିତାକାଂକ୍ଷୀ ବ୍ୟକ୍ତିର ଉପକାର ପ୍ରବୃତ୍ତିକୁ

ସମୟରେ ଭୁଲିଯାଇ ଈର୍ଷ୍ୟାଧୀନ ହୋଇ ତାଙ୍କ ସଙ୍ଗେ ମନ୍ଦ ବ୍ୟବହାର କଲେ ନିଜର ଅମଙ୍ଗଳ ହୁଏ ।

୮୬

ପରଘରେ କାହାର ଝିଅ ବୋହୂ ରନ୍ଧୁଣୀକାର୍ଯ୍ୟ କରିବା ଦୋଷାବହ ଅଟେ; ଶ୍ରୀମତୀ ପାକ କଲେ ଶ୍ରୀକୃଷ୍ଣଚନ୍ଦ୍ର ଭୋଜନ କରି ବଳିଷ୍ଠ ହେବେ, ଏକଥା ଦୁର୍ବାସାଋଷି କହିଥିଲେ । ଯଶୋଦା ଶ୍ରୀମତୀଙ୍କୁ ଆଣିବା ପାଇଁ କୁଟିଳାଙ୍କୁ ପଠାଇବାରୁ ଶ୍ରୀମତୀ ମଧ୍ୟ ଏହା କହିଥିଲେ । (ବ୍ରଜବିହାର )

୮୭

ଉତ୍ତମ ପୁରୁଷମାନେ ଅନ୍ୟର ଆରତ ସହି ପାରନ୍ତି ନାହିଁ । ଯେତେବେଳେ ଚିତ୍ରସେନ ଗନ୍ଧର୍ବ ଦୁର୍ଯ୍ୟୋଧନକୁ ବାନ୍ଧି ନେଉଥିଲା, ସେତେବେଳେ ଯୁଧିଷ୍ଠିରଙ୍କ ଆଦେଶରେ ଅର୍ଜ୍ଜୁନ ତାଙ୍କୁ ମୁକୁଳାଇଥିଲେ ।(ମହାଭାରତ ବନପର୍ବ)

୮୮

କ୍ଷୁଧା ସମୟରେ ଅନ୍ନଦାନ କରିବା ମହାପୁଣ୍ୟ ଅଟେ । ପରୋପକାରିତା ଧର୍ମ୍ମ ସର୍ବଶ୍ରେଷ୍ଠ ଅଟେ । (ବ୍ରଜବିହାର—୮ମବୋଲି)

୮୯

ବ୍ରାହ୍ମଣମାନେ ବହୁକ୍ଲେଶରେ ଅର୍ଜ୍ଜନ କରିବେ । ବ୍ରାହ୍ମଣୀମାନେ ତାହା ଅତିସହଜରେ ବ୍ୟୟ କରିବେ । ଯେତେବେଳେ ବ୍ରାହ୍ମଣୀମାନେ ଯଜ୍ଞଅନ୍ନ ନେଇ ବନକୁ ଆସିଥିଲେ, ତେତେବେଳେ ଶ୍ରୀକୃଷ୍ଣ ଏ ବର ଦେଇଥିଲେ ।

[ ବ୍ରଜବିହାର—୮ମବୋଲି ]

୯୦

ନାରିକେଳ ବୃକ୍ଷ ଗୋଳିଆଜଳ ବା ଖାରୁଆଜଳ ଶୋଷଣ କରି ମଧୁର

ଜଳ ଯୋଗାଏ, ମାତ୍ର ଖଜୁରୀ ଗଛ ନିକଟକୁ ଯିବାକୁ ଭୟ ମାଡ଼େ । ତେଣୁ ଖଜୁରୀ ପତ୍ର ନ ହୋଇ ନାରିକେଳ ପତ୍ର ହେବା ଉଚିତ ।

୯୧

ପିଲାମାନେ ଧୂଳିଘର ଖେଳିବା ସମୟରେ କୌଣସି ଦୁଷ୍ଟ ପିଲା କୌଣସି କାରଣରୁ ରାଗିଯାଇ ଧୂଳିଘର ଭାଙ୍ଗି ଦେଇ, ସେଠାରୁ ପଳାଇଯାଏ ନତୁବା ସେହିଠାରେ ରହି କଳି ଲଗାଉଥାଏ । ସଂସାରୀମାନଙ୍କର ଘର-କରଣା, ଜମି ବାଡ଼ି କିଣିବା, ମହାଜନ କରିବା ଇତ୍ୟାଦି ଧୂଳିଖେଳ ପରି ଅଟେ, ଯଦି ଉକ୍ତ ସଂସାରରେ କୌଣସି ଦୁଷ୍ଟପ୍ରକୃତିର ଲୋକ ସ୍ଥାନ ପାଏ, କିଂବା ଜାତ ହୁଏ, ସେ ସମସ୍ତଙ୍କର ଘରକରଣା ନଷ୍ଟକରି ସେଠାରୁ ପଳାଏ ନତୁବା ସେହି ସ୍ଥାନରେ ରହି ନାନା ପ୍ରକାର କଳହ ସୃଷ୍ଟିକରି ବିପ୍ଳବ ଜନ୍ମାଏ । ଏଭଳି ଲୋକକୁ "ଗାରଲିଭା" ବା "ଅକାଳକୁଷ୍ମାଣ୍ଡ" କହନ୍ତି ।

୯୨

ଅତିଭକ୍ତି, ଅତିମାନୀ, ଅତିଦାନୀ, ଅତିକ୍ରୋଧୀ, ଅତିବିଳାସୀ, ଏହିପରି ଯେ କୌଣସି ଭଲମନ୍ଦ କାର୍ଯ୍ୟରେ ଅତି କଥା ବଡ଼ ଅମଙ୍ଗଳକର ଅଟେ । ଏହା ଶାସ୍ତ୍ରୋକ୍ତି ଅଟେ ।

୯୩

ଅଭାବ ଥିଲେ ବରଂ ଉପବାସ ରହି ଦିନ କଟାଇବ, କଦାପି ଋଣ କରିବ ନାହିଁ । ଧାର କରି [କାଲି କରି] କୌଣସି ପଦାର୍ଥ ଆଣିବ ନାହିଁ । କାଲି କରି ଖାଇବାଟା ମୁହଁରେ କାଳି ଲଗାଇବା ସଙ୍ଗେ ସମାନ । ଋଣ ମହାବ୍ୟାଧିରେ ଗଣ୍ୟ ଅଟେ । ଏହା ମୋର ପିତାଜ୍ଞା, ମୁଁ ଏହା ମାନି ଚାଲିଥିବା ହେତୁ ବହୁତ ଉପକାର ଜୀବନରେ ପାଇଅଛି, ତେଣୁ ଉଲ୍ଲେଖ କଲି ।

୯୪

ଜଳରେ ବୁଡ଼ିଯାଉଥିବା ବ୍ୟକ୍ତିକୁ ଉଦ୍ଧାର କରିବାକୁ ଗଲେ ସେ ଯେପରି ଜୀବନ ବିକଳରେ ଉଦ୍ଧାରକାରୀର ଆଶ୍ରା ଲୋଡ଼ି ଲୋଡ଼ି ଉଭୟେ ନଷ୍ଟ ହୁଅନ୍ତି, ସେହିପରି ଯେଉଁ ବ୍ୟକ୍ତି ମଦ, ବେଶ୍ୟା ବା ପରଦାରାସକ୍ତ ଅଥବା ବଜାରି ଢଙ୍ଗରେ ସ୍ୱଭାବ ବା ବେଶଭୂଷା ସାଜି ଅଛି, ସେପରି ବ୍ୟକ୍ତିର ସଙ୍ଗୀ ହେଲେ ନଷ୍ଟ ହେବାକୁ ହୁଏ । ସେ ନଷ୍ଟ ହୋଇଅଛି, ଅନ୍ୟକୁ ନଷ୍ଟ କରିବା ତାର ସ୍ୱଭାବ । କଥାରେ କହନ୍ତି "ଚୋର ମରେ, ସାଙ୍ଗ ଲୋଡ଼େ ।"

୯୫

ନିଜ ବୁଦ୍ଧିରେ କାର୍ଯ୍ୟ କରିବ, ପର ବୁଦ୍ଧିରେ ପଡ଼ି କିଛି କାର୍ଯ୍ୟ କରିବ ନାହିଁ । ବରଂ ପରାମର୍ଶ ନେଇ ବିବେଚନା ପୂର୍ବକ ଯାହା କରିବ । କଥାରେ ଅଛି—"ଆପଣା ବୁଦ୍ଧିରେ କାଠୁଡ଼ା ଚଢ଼ିବ, ପରବୁଦ୍ଧିରେ ଘୋଡ଼ା ଚଢ଼ିବ ନାହିଁ ।"

୯୬

ଯେ କୌଣସି ଜାତି ବା ବ୍ୟକ୍ତି କଷ୍ଟ ସହିପାରେ, ସେ ସୁଖଭୋଗ କରେ, ବଡ଼ ହୁଏ ଏବଂ ଅମର ହୁଏ । ଏଥିର ଉଦାହରଣ ପ୍ରତ୍ୟେକ ମହାପୁରୁଷ ଓ ପଶ୍ଚିମାଞ୍ଚଳବାସୀ ।

୯୭

ବ୍ରାହ୍ମଣ ଜଳକୁ, କ୍ଷତ୍ରିୟ ଯୁଦ୍ଧକୁ ଓ ସଜ୍ଜନାସ୍ତି ଅଗ୍ନିକୁ ଭକ୍ଷକଲେ ଦୁଃଖ ଭୋଗ କରନ୍ତି । (ମହାଭାରତ—ଭୀଷ୍ମପର୍ବ)

୯୮

ଯେ ସତ୍ୟକୁ ଅବଲମ୍ବନ କରି ସର୍ବଦା ଚଳେ, ଅଭାବ ହେଲେ

ଅନ୍ୟଠାରେ ପ୍ରାର୍ଥୀ ହୁଏ ନାହିଁ, ପରର କୁତ୍ସା ରଚନା କରେ ନାହିଁ, ନିଜ ବ୍ୟବସାୟରେ ନିରତ ରତ ଥାଏ, ସେ ପୁତ୍ରପୌତ୍ରାଦି କ୍ରମେ ସୁଖ ଭୋଗ କରେ ।

୯୯

କୌଣସି ମନ୍ଦକାର୍ଯ୍ୟ କରିବା ତାହାର ଭବିଷ୍ୟତ୍ ଅମଙ୍ଗଳର ଲକ୍ଷଣ ଅଟେ । ପାଣ୍ଡବମାନଙ୍କର ବନଗମନ ସମୟର ବେଶଭୂଷାର ଲକ୍ଷଣ ବିଦୁର ଠାରୁ ଧୃତରାଷ୍ଟ୍ର ଶୁଣି କାରଣ ପଚାରିବାରୁ ବିଦୁର ଏହିପରି ବୁଝାଇ କହିଥିଲେ:—ଧୌମ୍ୟ ପୁରୋହିତ ପଶ୍ଚାତ୍‌ପାର୍ଶ୍ୱରେ କୁଶ ଧରି ଆଗେ ଆଗେ ଚାଲିବାର କାରଣ—ଏହିପରି କୁରୁକୁଳର ଶ୍ରାଦ୍ଧ ହେବ । ବଂଶଲୋପ ହେବାର ଜାଣି ଯୁଧିଷ୍ଠିର ମୁହଁକୁ ହାତଦ୍ୱାରା ଆବୃତ କରି ଯାଉଅଛନ୍ତି । କୁରୁପକ୍ଷକୁ ଭୀମ ଗଦାଦ୍ୱାରା ନିଧନ କରିବ ବୋଲି ସେ ଦୁଇ ବାହା ହଲାଇ ହଲାଇ ଯାଉଅଛି । ଶ୍ରାବଣମାସ ବୃଷ୍ଟି ଧାରା ପରି ଅର୍ଜୁନ ବାଣ ବୃଷ୍ଟି କରିବ ବୋଲି ସେ କାନ୍ଦି କାନ୍ଦି ଲୋତକ ବର୍ଷଣ ଛଳରେ ଯାଉଅଛି । ଶତ୍ରୁମାନଙ୍କ ରକ୍ତରେ ନକୁଳ ଦେହ ବୋଳାହେବ ବୋଲି ନକୁଳ ଭସ୍ମ ବୋଳିହୋଇ ଯାଉଅଛି । ଶ୍ରାଦ୍ଧ କ୍ରିୟା କରିବା ଉଦ୍ଦେଶ୍ୟରେ ସହଦେବ ଗେରୁଆ ବସ୍ତ୍ର ପିନ୍ଧି ଯାଉଅଛି । କୁରୁ ରମଣୀମାନେ ହା ପୁତ୍ର ହା ପତି କହି ପାଗଳିନୀ ପରି କୁରୁକ୍ଷେତ୍ରରେ ଚିତ୍କାର କରି ବୁଲିବେ ବୋଲି ଦ୍ରୌପଦୀ ମୁକ୍ତ କେଶରେ ଗମନ କରୁଅଛନ୍ତି । ତ୍ରୟୋଦଶ ବର୍ଷ ଶେଷରେ ଓ ଚତୁର୍ଦ୍ଦଶ ବର୍ଷ ଆଦ୍ୟରେ ଯୁଦ୍ଧ ନିଷ୍ପନ୍ନ ହେବ ।

( ମହାଭାରତ—ବନପର୍ବ )

୧୦୦

କୌଣସି ବୃକ୍ଷ ମୂଳରେ ଜଳ ଓ ସାର ନଦେଲେ ସେ ଯେପରି ବର୍ଦ୍ଧିତ ହୁଏ ନାହିଁ, ସେହିପରି ଯେଉଁ ସଂସାରରେ ଦୟା ଓ ଧର୍ମ ନ ଥାଏ, ସେ ସଂସାରର ଉନ୍ନତି ହୁଏ ନାହିଁ ।

୧୦୧

ସୂର୍ଯ୍ୟ ପୃଥିବୀକୁ ସହସ୍ରଭାଗ କରଣ ଦେଅନ୍ତି ବୋଲି ତାହାଙ୍କୁ ସହସ୍ରାଂଶୁ କହନ୍ତି ଯଥା,—ମେଷରେ ୬୦ ଭାଗ, ବୃଷରେ ୭୦ଭାଗ, ମିଥୁନରେ ୮୦ଭାଗ, କର୍କଟରେ ୩୦ ଭାଗ, ସିଂହରେ ୧୮୦ ଭାଗ, କନ୍ୟାରେ ୫୦ ଭାଗ, ତୁଳରେ ୬୦ ଭାଗ, ବିଛାରେ ୭୦ ଭାଗ, ଧନୁରେ ୧୯୦ ଭାଗ, ମକରରେ ୧୦୦ ଭାଗ, କୁମ୍ଭରେ ୧୦୦ ଭାଗ, ମୀନରେ ୭୦ ଭାଗ। (ବ୍ରହ୍ମପୁରାଣ)

୧୦୨

ଦୟା ସବୁଠାରୁ ଶ୍ରେଷ୍ଠ । ଦୟାହୀନ ବ୍ୟକ୍ତି ପଶୁତୁଲ୍ୟ ଅଟେ ।
(ବ୍ରହ୍ମପୁରାଣ)

୧୦୩

ପିତା ମାତାଙ୍କ ବାକ୍ୟ ନ ଶୁଣି ଯେ ନିଜ ଇଚ୍ଛାରେ କାର୍ଯ୍ୟକରେ, ସେ ପରେ ଦୁଃଖ ପାଏ । ସୁଲୋଚନା, ପ୍ଲକ୍ଷଦ୍ୱୀପ ରାଜା ଗୁଣାକର, କୁଶଦ୍ୱୀ ରାଜା ବିଦ୍ୟାଧର, ଜମ୍ବୁଦ୍ୱୀପ ରାଜା ମାଧବ ଏଥିର ଉଦାହରଣ। ସୁଲୋଚନା ପ୍ଲକ୍ଷଦ୍ୱୀପ ରାଜାଙ୍କର ଝିଅ। ପ୍ଲକ୍ଷରାଜ କୁଶଦ୍ୱୀପରାଜଙ୍କୁ କନ୍ୟାବିବାହ ଦେବାର ସ୍ଥିର କରିଥିଲେ। କିନ୍ତୁ ସୁଲୋଚନା ଜମ୍ବୁଦ୍ୱୀପ ରାଜାଙ୍କର ଗୁଣାବଳି ଦୂତଠାରୁ ଶୁଣି ତାଙ୍କୁ ନେଇଯିବା ପାଇଁ ଗନ୍ଧନାମା ମାଲୁଣୀ ଦ୍ୱାରା ଖବର ଦେଇ ବିବାହ ହୋଇ ପରେ କଷ୍ଟ ପାଇଲେ। ଏଥିରୁ ପ୍ରମାଣ ମିଳୁଅଛି ଯେ, ପୂର୍ବେ ବିଦେଶୀୟ ବିବାହ ପ୍ରଚଳିତ ଥିଲା। ଚନ୍ଦ୍ରଗୁପ୍ତ ଗ୍ରୀକ୍‌ଦେଶୀୟ ରାଜକନ୍ୟାକୁ ବିବାହ କରିଥିଲେ। (ପଦ୍ମପୁରାଣ—୭ମ ଅଧ୍ୟାୟ)

୧୦୪

ସର୍ପକୁ ବଶ କରି ତାହାଠାରୁ ବିଷ ନେଇ ରୋଗୀର ପ୍ରାଣରକ୍ଷା କରି ଉପକାର ପାଇ ଯେପରି ସାବଧାନରେ ଚଳନ୍ତି, ସେହିପରି ରାଜକର୍ମଚାରୀଙ୍କ

ସହିତ ପ୍ରଣୟୂରଖି ତାଙ୍କଠାରୁ କାର୍ଯ୍ୟ ନେଇ ସେମାନଙ୍କ ସହିତ ସାବଧାନରେ ବ୍ୟବହାର କରିବ ।

୧୦୫

ଯେଉଁ ବୃକ୍ଷରେ ଫଳ ଥାଏ, ସେ ବୃକ୍ଷକୁ ଲୋକେ ଫଳପ୍ରାପ୍ତି ଆଶାରେ ନାନାପ୍ରକାରେ କଷ୍ଟ ଦିଅନ୍ତି; ଯେଉଁ ଲୋକର ଧନ ଥାଏ, ଲୋକମାନେ ଧନପ୍ରାପ୍ତି ଆଶାରେ ସେ ଲୋକକୁ ନାନା ଭାବରେ ବିରକ୍ତ କରନ୍ତି ।

୧୦୬

ଯେପରି କଣ୍ଡା ସବୁ ବର୍ଷାଦିନରେ ଜଳପୂର୍ଣ୍ଣ ହୋଇ ଗ୍ରୀଷ୍ମ ସମୟରେ ଶୁଷ୍କ ହୋଇଯାନ୍ତି, ସେହିପରି ନାନା ବ୍ୟକ୍ତିଙ୍କର ଅବସ୍ଥା ସମୟ ସମୟରେ ପରିବର୍ତ୍ତିତ ହୁଏ ।

୧୦୭

ବାଉଁଶ ବୁଦାରେ ଯେଉଁ ବାଉଁଶ ତାଡୁଥାଏ, ସେ ଘୂରିଯାଏ ଓ କଟାହୁଏ, ବଣରେ ମଧ୍ଯ ବୃକ୍ଷମାନେ ଘଷିହୋଇ ଅଗ୍ନି ଜାତକରି ବନ ପୋଡ଼ି ଦିଅନ୍ତି; ସେହିପରି ଯେଉଁ ମନୁଷ୍ୟ ତାଡୁଆ ହୁଏ, ସେ ନିଜକୁ ନଷ୍ଟକରି ବଂଶ ନାଶକରେ ।

୧୦୮

ଯେ ନିଜର ମାନ ରକ୍ଷା କରି ନ ପାରେ, ସେ ଅନ୍ୟର ମାନ ରକ୍ଷା କରିପାରେ ନାହିଁ । ଯେ ଆପଣାକୁ ସମ୍ଭାଳି ନପାରେ, ସେ ଅନ୍ୟକୁ କିଂବା ବିଷୟ ସମ୍ପତ୍ତିକୁ ସମ୍ଭାଳି ପାରେ ନାହିଁ ।

୧୦୯

ଯେପରି ଧୂପ ଅଗ୍ନିରେ ପୋଡ଼ି ହୋଇ ଅନ୍ୟର ତୃପ୍ତି ସାଧନ କରେ,

ସେହିପରି ମହା ପୁରୁଷ ଓ ସାଧୁ ବ୍ୟକ୍ତିମାନେ କଷ୍ଟ ସ୍ୱୀକାର କରି ଅନ୍ୟର ଉପକାର କରନ୍ତି ଓ ଅନ୍ୟ ପାଇଁ ହିତକର କାର୍ଯ୍ୟ କରନ୍ତି ।

୧୧୦

ଯେଉଁ ସ୍ତ୍ରୀମାନଙ୍କର ସମ୍ମୁଖ ଦନ୍ତଶ୍ରେଣୀ ଫାଙ୍କ ଫାଙ୍କ ହୋଇଥାଏ, ସେମାନଙ୍କର ସଧବାତ୍ୱ ବେଶିଦିନ ରହେ ନାହିଁ ।

୧୧୧

ଯେଉଁମାନଙ୍କର ହାତ ଗୋଡ଼ ଝାଳୁଆ, ସେମାନେ ସୁଖୀ ହୁଅନ୍ତି ନାହିଁ । ଯେଉଁମାନଙ୍କର ପାଦର ତଳିପା ବଙ୍କା, ସେମାନଙ୍କର ବଂଶଲୋପ ହୁଏ । ଯେଉଁମାନଙ୍କର ସ୍ନାନରେ ଶବ୍ଦ ହୁଏ, ସେ ସୁଲକ୍ଷଣ ନୁହେଁ । ଯେଉଁ ପୁରୁଷମାନଙ୍କର ସ୍ତନ ଚକ୍ଷୁ କୃଷ୍ଣବର୍ଣ୍ଣ ସେମାନେ ଧନୀ ହୁଅନ୍ତି ।

( ବୃହତ୍ ସଂହିତା )

୧୧୨

ଆଜକାଲି ବୈଜ୍ଞାନିକମାନେ ବଜ୍ରନିବାରଣ ପାଇଁ କୋଠାଘରମାନଙ୍କରେ ତାର ବ୍ୟବହାର କରନ୍ତି, କିନ୍ତୁ ଜିଣିର ସିଝୁ ବ୍ୟବହାର କଲେ ବଜ୍ର ନିବାରିତ ହୁଏ ।

୧୧୩

ସୁକାର୍ଯ୍ୟର ଫଳ 'ସୁ' ଓ କୁକାର୍ଯ୍ୟର ଫଳ 'କୁ' ହୁଏ ।

( ଭାଗବତ ୬ଷ୍ଠ ସ୍କନ୍ଦ—୧ମ ଅଧ୍ୟାୟ )

୧୧୪

ଯେଉଁ ମାନଙ୍କର ମୁଖ ରୋଜଆ ଅର୍ଥାତ ସରୁ ମୁହଁ, ସେମାନେ ଉପକୃତ

ହୋଇ ସୁଦ୍ଧା ଅପକାର କରନ୍ତି । ସେମାନେ ସୁଖୀ ନୁହନ୍ତି । ଯେଉଁମାନେ ଖାଇବା ବେଳେ ଚୁକୁ ଚୁକୁ କରନ୍ତି, ଯେଉଁମାନଙ୍କର ଚକ୍ଷୁ ଗହ୍ୱର, ହାତ ପାପୁଲି, ଗୋଡ଼ ତଳିପା ଚୂଲି ପୋଡ଼ା ପରି ଦିଶେ; ଯେଉଁମାନଙ୍କର ଓଷ୍ଠ କଳା ଓ ଜିଭ କଳା, ତାଳୁ ଉପରେ କୃଷ୍ଣବର୍ଣ୍ଣ ଚିହ୍ନ ଥାଏ, ସେମାନେ ସୁଖୀ ନୁହନ୍ତି । (ବୃହତ୍ ସଂହିତା)

୧୧୫

ଉଚ୍ଚ ବଂଶରେ ବା ଉଚ୍ଚ ଶ୍ରେଣୀରେ ଜାତ ହୋଇ ଉତ୍ତମ କାର୍ଯ୍ୟ ନ କଲେ ପତନ ହୁଏ । ଶୁଦ୍ଧ ସୁବର୍ଣ୍ଣରେ ଭେଲ ମିଶ୍ରିତ କଲେ ତାହାର ମୂଲ୍ୟ ଊଣା ହୁଏ । ଉଚ୍ଚବ୍ୟକ୍ତି ନୀଚ କାର୍ଯ୍ୟ କଲେ ବା ନୀଚ କାର୍ଯ୍ୟରେ ଯୋଗ ଦେଲେ ତାହାର ଆଦର ବା ସମ୍ମାନ ଊଣା ହୋଇ ଯାଏ ।

୧୧୬

ଦୁଃଖ ସମୟରେ ଚକିତ ନ ହୋଇ ଆନନ୍ଦିତ ହେବ । କାରଣ ଦୁଃଖପରେ ସୁଖ ନିଶ୍ଚୟ ଆସିବ । ଦୁଃଖ ସମୟରେ ଭଗବାନଙ୍କୁ ଭାବିବାର ସୁଯୋଗ ମିଳେ । ଏହା କୁନ୍ତୀ ଶ୍ରୀକୃଷ୍ଣଙ୍କୁ କହିଥିଲେ ।(ମହାଭାରତ ବନପର୍ବ) ଦୁଃଖ ବଡ଼ ବଡ଼ ଲୋକ ସହିଛନ୍ତି । ନଳରଜା, ଶ୍ରୀବତ୍ସ ରଜା, ଶ୍ରୀରାମଚନ୍ଦ୍ର, ଓ ପାଣ୍ଡବମାନେ ; ଆଜି କାଲି ମହାତ୍ମାଗାନ୍ଧି, ତିଳକ ; ମୋତିଲାଲ ନେହେରୁ ଓ ଜହରଲାଲ ନେହେରୁ, [illegible]ନଦାସ, ସୁଭାସଚନ୍ଦ୍ର ଘୋଷ —ଏମାନେ ଦୁଃଖକୁ ସହଚର କରିଛନ୍ତି, [illegible] କଥା କଏ ପଚାରେ ?

୧୧୭

ଅସମ୍ଭବ କଥାକୁ ବିଶ୍ୱାସ କଲେ ଦୁଃଖ ପାଇବାକୁ ହୁଏ । ରାମଚନ୍ଦ୍ର ଓ ସ୍ୱର୍ଣ୍ଣ-ମୃଗ । (ରାମାୟଣ)

୧୧୮

ଭାଇ ଭାଇର ମନାନ୍ତର ଥିଲେ ପର ଜନ୍ମରେ ମଧ ମନାନ୍ତର ଥାଏ ।

ସୁନ୍ଦ, ଉପସୁନ୍ଦ ତିଲୋତ୍ତମାପାଇଁ କଳି ଲଗାଇଥିଲେ । ପରେ ଗଜକଚ୍ଛପହୋଇ ଅରଣ୍ୟମଧ୍ୟସ୍ଥ ପୁଷ୍କରଣୀରେ ଯୁଦ୍ଧ କରିଥିଲେ । [ମହାଭାରତ ଆଦିପର୍ବ ]

୧୧୯

ଯେ ଅହଙ୍କାର କରେ ତାର ଗର୍ବ ଭଗବାନ୍ ନଷ୍ଟ କରନ୍ତି । ଯୁଧିଷ୍ଠିର ଯଜ୍ଞ ପରେ ଅହଂକାର କରିବାରୁ ବଳି ନକୁଳକୁ ପ୍ରକାରାନ୍ତରରେ ନେଇ ତାଙ୍କର ଗର୍ବ ଚୂର୍ଣ୍ଣ କରିଥିଲେ । (ମହାଭାରତ—ଆଦିପର୍ବ)

୧୨୦

ସୁନା ପ୍ରଭୃତି ଧାତୁ ଦ୍ରବ୍ୟ ମିଶ୍ରିତ ହେଲେ ତାହାର ମୂଲ୍ୟ ଊଣା ହୁଏ, ପୁଣି ସଂଶୋଧିତ ହେଲେ ମୂଲ୍ୟ ବଢ଼େ । ସେହିପରି ନଷ୍ଟ ବ୍ୟକ୍ତି ଯତ୍ନ ଦ୍ୱାରା ସୁପଥକୁ ଆସି ପାରେ । ଜଗାଇ ମାଧାଇ ତହିଁର ଉଦାହରଣ ।

୧୨୧

ତରବାରି ଅପେକ୍ଷା ଯେ ତରବାରି ବ୍ୟବହାର କରେ ତାକୁ ବେଶି ଡ଼ରନ୍ତି । ସେହିପରି ରାଜାଙ୍କ ଅପେକ୍ଷା ରାଜକର୍ମଚାରୀମାନଙ୍କୁ ବେଶି ଡରିବାର କଥା ।

୧୨୨

କାହାରକୁ ନ ମାରିଲେ ସୁଦ୍ଧା ଖଣ୍ଡିଏ ଠେଙ୍ଗା କାନ୍ଧରେ ପକାଇ ଥିଲେ ଲୋକେ ବା ହିଂସ୍ରଜନ୍ତୁ ଡରନ୍ତି । ଅତଏବ ସର୍ବଦା ସାବଧାନ ଭାବରେ ଚଳିବ ।

୧୨୩

ଯାହାର ପୁତ୍ର ସନ୍ତାନ ନଥାଏ ସେ ଯଦି ପୋଷ୍ୟ ପୁତ୍ର କରେ ତେବେ

ସେ ପୁଣି କୁଳବିରୁଦ୍ଧ କାର୍ଯ୍ୟକରେ, ଏହା ଅନେକ ସ୍ଥଳରେ ଦେଖାଯାଏ କାରଣ ଏହା ଈଶ୍ୱରଙ୍କ ଇଚ୍ଛାବିରୁଦ୍ଧ । ସୁରଥ ରାଜା ଓ ଜୟଦ୍ରଥ ସେଥିର ଉଦାହରଣ, କାରଣ ସୁରଥ ରାଜାଙ୍କର ସନ୍ତାନ ନ ହେବାର ପୂର୍ବରୁ ଗୋମାତାଙ୍କର ଅଭିଶାପ ଥିଲା । ସେ ମହାଦେବଙ୍କଠାରେ ବର ପ୍ରାର୍ଥୀ ହେବାରୁ ସେ ବିରକ୍ତ ହୋଇ ବର ଦେଇଥିଲେ । (ମାର୍କଣ୍ଡେୟ ପୁରାଣ)

୧୨୪

ଫୁଲର ନାମ—ମଲ୍ଲୀ, ଚମ୍ପା, ମାଳତୀ, ଯୁଇ ଇତ୍ୟାଦି । ନଦୀର ନାମ—ଗଙ୍ଗା, ଯମୁନା, ସରସ୍ୱତୀ, ଗୋଦାବରୀ ଇତ୍ୟାଦି । ଅନ୍ତ୍ୟଜନାମଯୁକ୍ତା—ଡେମି, ହାଡ଼ିଆଣୀ, ମେଙ୍କି, ପାଲୁଣୀ ଇତ୍ୟାଦି । ଭୟଂକରନାମଯୁକ୍ତା—ଅଗ୍ନି କୁମାରୀ, କାଳୀ, ଦୁର୍ଗା, ଗୌରୀ, ଶ୍ୟାମା ଇତ୍ୟାଦି—ଏପରି ନାମଯୁକ୍ତା କନ୍ୟାସହିତ ବିବାହ କଲେ ଅମଙ୍ଗଳ ହୁଏ । (ମନୁ ସଂହିତା)

୧୨୫

ଯେ ପରର ଦୁଃଖରେ ଦୁଃଖ ଅନୁଭବ କରେ, ସେ ପ୍ରକୃତ ଦୁଃଖୀ ଓ ଯେ ପରର ସୁଖରେ ସୁଖ ଅନୁଭବ କରେ, ସେ ପ୍ରକୃତ ସୁଖୀ ।

୧୨୬

ଯାହାର ମନ ବଡ ସେ ପ୍ରକୃତରେ ବଡ଼; ଯାହାର ହୃଦୟ ନୀଚ ସେ ଧନୀ, ଗୁଣବାନ୍ ହୋଇ ଥିଲେ ସୁଦ୍ଧା ନୀଚ ବ୍ୟକ୍ତି ଅଟେ ।

୧୨୭

ସନ୍ତାନହୀନ ବ୍ୟକ୍ତିଠାରୁ ବଳି ସଂସାରରେ କେହି କଷ୍ଟ ର ନାହିଁ ।

୧୨୮

ଲୁହା ଯେପରି ଲୁହାକୁ ଧାରୁଆ କରେ, ସେହିପରି ପୁରୁଣା ପୋଥି ଆଲୋଚନା କଲେ, ନୂଆ ପୋଥି ଲେଖକର ବୁଦ୍ଧି ମାର୍ଜିତ ହୁଏ ।

୧୨୯

ଯେଉଁ ବ୍ୟକ୍ତି ଅନ୍ୟର ପ୍ରଶଂସା ଓ ନିଜର ନିନ୍ଦା ଶୁଣି ଆନନ୍ଦିତ ହୁଏ ସେ ଉଚ୍ଚମନା ଅଟେ । କାରଣ ନିନ୍ଦା ଶୁଣିଲେ ମହତ୍ ବ୍ୟକ୍ତି ନିଜର ଦୋଷକୁ ସଂଶୋଧନ କରନ୍ତି । ଉଚ୍ଚମନାର ବିପରୀତ ନୀଚମନା ଅଟେ ।

୧୩୦

ନିର୍ଲଜ୍ଜ ମନୁଷ୍ୟ, ନିର୍ଲଜ୍ଜ ବୃକ୍ଷ, ନିର୍ଲଜ୍ଜ ପକ୍ଷୀ, ନିର୍ଲଜ୍ଜ ମାଛ କାହାକୁ କହନ୍ତି-ଏ କଥା ଲକ୍ଷ୍ମଣ ରାମଚନ୍ଦ୍ରଙ୍କୁ କହିଥିଲେ । ରାମଚନ୍ଦ୍ର ଲଙ୍କାରୁ ଫେରିବାବେଳେ ଶ୍ୱଶୁର ଘର ବାଟେ ଫେରିବାକୁ ମନ କରିବାରୁ ସେ ବାରଣ ନ କରି ପ୍ରକାରାନ୍ତରେ କହିଥିଲେ ଯେ ବିନା ନିମନ୍ତ୍ରଣରେ ଶ୍ୱଶୁର ଘରକୁ ଯାଏ, ସେ ନିଲଜ୍ଜ ମନୁଷ୍ୟ, ବରକୋଳିଗଛକୁ ଯେତେ କାଟିଲେ ସେ ବଢ଼େ, ତେଣୁ ସେ ନିର୍ଲଜ୍ଜ ବୃକ୍ଷ, ଘରଚଟିଆ ନିର୍ଲଜ୍ଜପକ୍ଷୀ ଓ ବୁଢ଼ିକରି ନିର୍ଲଜ୍ଜ ମାଛ ।

୧୩୧

ଯେଉଁ ମାନଙ୍କ ପାହୁଲ ଉପରେ ଶିରା ଦେଖା ନ ଯାଏ, ସେମାନେ ଭାଗ୍ୟବନ୍ତ । ଯେଉଁମାନଙ୍କର ପାହୁଲର ପିଠି କୂର୍ମ ପିଠିପରି ସେମାନେ ଭାଗ୍ୟବନ୍ତ ।

୧୩୨

ଭୀଷ୍ମଙ୍କପରି ଯୋଦ୍ଧା ଚତୁର୍ଦ୍ଦିନ ଯୁଦ୍ଧରେ ବିରାଟପୁତ୍ର ଶ୍ୱେତଙ୍କ

ସଙ୍ଗରେ ଯୁଦ୍ଧ କଲାବେଳେ ପ୍ରତିଜ୍ଞା ରଖି ନ ଥିଲେ । ଅତଏବ ପ୍ରତିଜ୍ଞା କାହାର ରହେ ନାହିଁ । ( ସାରଳା ମହାଭାରତ—ଭୀଷ୍ମପର୍ବ )

୧୩୩

ଯେ ବନ୍ଧୁ ବିପଦ ସମୟରେ ସହାୟ ହୁଏ ଓ ଦୂରରୁ ଦେଖିବା ମାତ୍ରେ ହସେ, ସେ ପ୍ରକୃତ ବନ୍ଧୁ ଅଟେ ।

୧୩୪

ରାଜାଙ୍କ ମୁଖରୁ 'ଅନ୍ୟାୟ' ବାହାରିଲେ ରାଜମହତ୍ତ୍ୱ ରହେନାହିଁ, ଜ୍ଞାନୀ ବ୍ୟକ୍ତି ମିଥ୍ୟା କହିଲେ, ତାହାର ମହତ୍ତ୍ୱ ରହେ ନାହିଁ । ବନ୍ଧୁ ମଧ୍ୟରେ ମତାନ୍ତର ହେଲେ ବନ୍ଧୁତା ରହେ ନାହିଁ । ବେଶ୍ୟା ସଙ୍ଗରେ ସୁଜନ ନଷ୍ଟ ହୁଏ । କୁଜନ ସଙ୍ଗରେ ପଡ଼ିଲେ ଧର୍ମ ନଷ୍ଟ ହୁଏ । ରୋଗ ଶରୀର ନଷ୍ଟ କରେ । କ୍ରୋଧ ଶରୀରରେ ପଙ୍କୁ ଜାତ କରାଏ । ଆଳସ୍ୟ ମନୁଷ୍ୟର ବୁଦ୍ଧି ବିବେକ ବିନାଶ କରେ । ଏହା ଦ୍ରୋଣଙ୍କ ଉକ୍ତି ।

୧୩୫

ଯଜ୍ଞରେ କମ୍ବା ପୁରାଣ ପାଠରେ ଅଳ୍ପବୟସ୍କ ବ୍ରାହ୍ମଣଙ୍କୁ ବରଣ କରିବ ନାହିଁ । ଜନ୍ମେଜୟଙ୍କର ଅଶ୍ୱମେଧ ଯଜ୍ଞ ଏଥିର ପ୍ରମାଣ । ( ମହାଭାରତ )

୧୩୬

ଯୋଗ୍ୟ ବ୍ୟକ୍ତି ପାଇଁ ସୁପାରିଶ କରିବ । ଏକାକୀ ହୋଇ, ଅଧାର୍ମିକ ସହିତ ରାତିରେ, ସନ୍ଧ୍ୟାରେ ଅତି ପ୍ରତ୍ୟୁଷରେ ଶତ୍ରୁ ସହିତରେ, ମଧ୍ୟାହ୍ନ ସମୟରେ, ଜଳ ନିକଟଦେଇ, ହିଂସ୍ରଜନ୍ତୁପୂର୍ଣ୍ଣ ପଥରେ ଯିବ ନାହିଁ କିଂବା ଅତି ଶୀଘ୍ର ପଥ ଚାଲିବ ନାହିଁ । ( ବିଷ୍ଣୁସଂହିତା, ୭୧ ଅଧ୍ୟାୟ )

୧୩୭

ଦୁର୍ବଳ ବାହନ, ପରିଶ୍ରାନ୍ତ ଯାନ ବ୍ୟବହାର କରିବନାହିଁ । ହାତି

ଘୋଡ଼ା, ଓଟ, ବଳଦ ପ୍ରଭୃତ ବାହନମାନଙ୍କୁ ନ ଖୁଆଇ ଆଗେ ଖାଇବ ନାହିଁ । ଚତୁଷ୍ପଦ ( ଗୃହଚକଆ ) ସ୍ଥାନରେ, ବୃକ୍ଷ ମୂଳରେ, ନିର୍ଜନ ଗୃହରେ ଘାସଉପରେ, ପଶୁ ବନ୍ଧନ ଗୃହରେ ଅବସ୍ଥାନ କରିବ ନାହିଁ । କେଶ, ତୁଷ, ଅଙ୍ଗାର, ଭସ୍ମ,ଅସ୍ଥି ପଡ଼ିଥିବା ସ୍ଥାନରେ ବସାକରିବ ନାହିଁ । ଚତୁଷ୍ପଥ, ଦେବ ପ୍ରତିମା, ପ୍ରଜ୍ଜ୍ୱଳିତ ବନସ୍ପତି, ଅଗ୍ନି, ବ୍ରାହ୍ମଣ, ବେଶ୍ୟା, ପୂର୍ଣ୍ଣକୁମ୍ଭ, ଆଦର୍ଶ, ଛତ୍ର, ଧ୍ୱଜ, ଶ୍ରୀବୃକ୍ଷ, ଶରାବ, ନନ୍ଦ୍ୟାବର୍ତ୍ତ [ ରାଜ ଗୃହବିଶେଷ ] ତାଳବୃନ୍ତ, ଚାମର, ଅଶ୍ୱ, ହସ୍ତୀ, ଛାଗ,ଗାଈ, ଦଧି, ଦୁଗ୍ଧ, ମଧୁ, ରାଇ ସୋରିଷ, ବୀଣା, ଚନ୍ଦନ, ଅସ୍ତ୍ର, ଆର୍ଦ୍ର ଗୋମୟ, ଫଳପୁଷ୍ପ, ଆର୍ଦ୍ର ଶାକ, ଗୋରଚନା, ଅଳଙ୍କାର, ଉଷ୍ଣୀଷ, ଦୂର୍ବାଙ୍କୁର, ରତ୍ନ, ସ୍ୱର୍ଣ୍ଣ, ରୌପ୍ୟ, ବସ୍ତ୍ର, ଆସନ, ଯାନ, ଆମିଷ, ପ୍ରଦକ୍ଷିଣ କରି ଯାତ୍ରାକଲେ ଶୁଭ ହୁଏ । ଆହୁରି ମଧ ଭୃଙ୍ଗାରୋଦ୍ଧୃତ ସର୍ବ ଶସ୍ୟାଢ଼୍ୟ ମୃତ୍ତିକା, ରକ୍ତବଦ୍ଧ ଏକାକୀପଶୁ,ଅନୂଢ଼ାକନ୍ୟା, ମତ୍ସ୍ୟ ଦର୍ଶନ କରି ଗଲେ ଶୁଭହୁଏ । ଏହାର ବିପରୀତ ପାଗଳ, ବିକଳାଙ୍ଗ, ହୀନାଙ୍ଗ, ବାମନ, ଜଟାଧାରୀ, ଭିକ୍ଷୁକ, ମୁଣ୍ଡିତ, କଷାୟ ବସ୍ତ୍ରଧାରୀ, କାପାଳିକ ମଳିନ, ତୈଳ, ଗୁଡ଼, ଶୁଷ୍କ ଗୋମୟ, କାଠ,ଘାସ, ଖଡ଼,ଶୁଖିଲାପତ୍ର, ପାଉଁଶ, ଅଙ୍ଗାର, ଲୁଣ, କ୍ଳୀବ, ମଦ, ନପୁଂସକ, କପା, ବନ୍ଧନ, ମୁକ୍ତକେଶ ବ୍ୟକ୍ତିକୁ, ଦେଖିଲେ ଯାତ୍ରା ରହିତ କରିବ । ଯାତ୍ରା ସମୟରେ ବୀଣା, କୁମାରୀ, ଚନ୍ଦନ, ଆର୍ଦ୍ର ଶାକ, ଅଳଂକାର, ଉଷ୍ଣୀଷ—ଏ ସବୁକୁ ଅଭିବାଦନ କରିବ । (ବିଷ୍ଣୁ-ସଂହିତା ୩୬ ଅଧ୍ୟାୟ )

୧୩୮

ଯେଉଁ ପୁରୁଷମାନଙ୍କର ନିତମ୍ବ ସ୍ତ୍ରୀ ଲୋକଙ୍କର ନିତମ୍ବ ପରି ବଡ଼ ସେମାନେ ଅସୁଖୀ । ଯେଉଁ ସ୍ତ୍ରୀମାନଙ୍କର ଚାଲିବା, ବସିବା, କଥା କହିବା ଓ ହସିବା ପୁରୁଷ ପରି ଓ ଯେଉଁମାନଙ୍କର ନଖ ଦେଖା ଯାଏ, ଚକ୍ଷୁ ପିଙ୍ଗଳ ବର୍ଣ୍ଣ ସେ ମାନେ ଅସୁଖୀ ଅଟନ୍ତି ।

୧୩୯

ମାତା, ପିତା, ଗୁରୁ (ଦୀକ୍ଷାଗୁରୁ) ଏମାନଙ୍କୁ ସମ୍ମାନ କରିବ । ଏମାନେ ବ୍ରହ୍ମା, ବିଷ୍ଣୁ, ମହେଶ ତ୍ରିଦେବ ଅଟନ୍ତି, ପୁଣି ପିତା ଗାର୍ହପତ୍ୟ ଅଗ୍ନି,

ମାତା ଦକ୍ଷିଣାଗ୍ନି, ଆଗୃହୀୟ ଆହବନୀୟ ଅଗ୍ନି ଅଟନ୍ତି । ଏମାନଙ୍କୁ ଆଦର, ଭକ୍ତି, ମାନ୍ୟ କଲେ ସବ ଶୁଭ ଅନ୍ୟଥା ବିପରୀତ ଫଳହୁଏ । [ବିଷ୍ଣୁସଂହିତା]

୧୪୦

ରାଜା, ଅଧର୍ମ ନିଷେଧକ, ଋତ୍ୱିକ୍, ଶୋତ୍ରିୟ, ଉପାଧ୍ୟାୟ, ପିତୃବ୍ୟ ମାତାମହ, ମାତୁଳ, ଶ୍ୱଶୁର, ଜ୍ୟେଷ୍ଠଭ୍ରାତା, ସମ୍ବନ୍ଧୀ ଏମାନେ ଆଗୃହୀୟ ପରି ଉପରୋକ୍ତଭାବେ ମାନ୍ୟ ଅଟନ୍ତି । ସବର୍ଣ୍ଣା ସ୍ତ୍ରୀ, ପିତୃସ୍ୱସା, ମାତୃସ୍ୱସା, ବଡ ଭଉଣୀ ଉପରୋକ୍ତଭାବେ ମାନ୍ୟ ଅଟନ୍ତି । ସବର୍ଣ୍ଣା ସ୍ତ୍ରୀ ହୋଇ ନଥିଲେ କେବଳ ଦୂରରୁ ଅଭିବାଦନ କରିବ । ପାଦ ସ୍ପର୍ଶ କରିବ ନାହିଁ । ଗୁରୁପତ୍ନୀଙ୍କର ପାଦ ମର୍ଦ୍ଦନ, କେଶ ବନ୍ଧନ, ତୈଳ ମର୍ଦ୍ଦନ ଇତ୍ୟାଦି ସ୍ପର୍ଶ ଜନିତ କାର୍ଯ୍ୟ କରିବ ନାହିଁ । ଅପରିଚିତା ରମଣୀ ସହିତ ବୟସାନୁସାରେ ଭଗ୍ନୀ କନ୍ୟା, ମାତା ଭାବେ ସମ୍ବୋଧନ କରିବ । ଗୁରୁ ଜନଙ୍କୁ "ତୁମେ" ବୋଲି କହିବ ନାହିଁ । ଗୁରୁ-ଜନଙ୍କୁ ଅପମାନଜନିତ କଥା କହିଥିଲେ ଉପବାସ କରି ତାଙ୍କୁ ଥଣ୍ଡା ଓ ପ୍ରସନ୍ନ କରି ଆହାର କରିବ । [ବିଷ୍ଣୁ ସଂହିତା ୩୨ଶ ଅଧ୍ୟାୟ ]

୧୪୧

ମନୁଷ୍ୟଙ୍କର ଏକବର୍ଷ ଦେବତାଙ୍କର ୧ଦିନ । ଏହିପରି ଦେବତାଙ୍କର ବାରବର୍ଷରେ କଳିଯୁଗ ଶେଷ ହୁଏ । ( କୃଷ୍ଣ ସଂହିତା ୨୦ଶ ଅଧ୍ୟାୟ )

୧୪୨

ଗ୍ରହଣ ସମୟରେ ଓ ପୂର୍ବରୁ, ସନ୍ଧ୍ୟା ଓ ସକାଳେ, ଅଜୀର୍ଣ୍ଣାବସ୍ଥାରେ ଆହାର କରିବ ନାହିଁ । ( ବିଷ୍ଣୁ ସଂହିତା ୬୮ ଅଧ୍ୟାୟ )

୧୪୩

ଚତୁର୍ଥୀ, ଷଷ୍ଠୀ, ଅଷ୍ଟମୀ, ପୂର୍ଣ୍ଣିମା, ଅମାବାସ୍ୟା, ଭୋଜନପରେ,

ଦିବସରେ, ବ୍ରତ ଦିନରେ ସ୍ତ୍ରୀଗମନ ନିଷେଧ, ଗମନ କଲେ ତେବେ ରୋଗୀ, କ୍ଷୀଣାୟୁ, ଦରିଦ୍ର, ବିକଳାଙ୍ଗ, ହୀନାଙ୍ଗ ସନ୍ତାନ ଜାତ ହୁଏ । ସନ୍ଧ୍ୟାରେ ସ୍ତ୍ରୀ ଗମନ ତଦ୍ରୂପ ନିଷେଧ । ( ବିଷ୍ଣୁ ସଂହିତା ୬୯ ଅଧ୍ୟାୟ )

୧୪୪

ରିତୁର ଯୁଗ୍ମ ଦିବସରେ, ଉପରୋକ୍ତ ତିଥି, ଦିବସ ଭିନ୍ନ ସୁସମୟରେ ସ୍ତ୍ରୀ ସମ୍ଭୋଗ କଲେ ଦୀର୍ଘାୟୁ, ନିରୋଗ ବୁଦ୍ଧିମାନ୍, ସର୍ବଶୁଭଲକ୍ଷଣଯୁକ୍ତ ସନ୍ତାନ ଜାତ ହୁଏ । (ପରାଶର ସଂହିତା )

୧୪୫

"ପୟୋବ୍ରତ" ବିଧି ଅନୁସାରେ ସ୍ତ୍ରୀ ସମ୍ଭୋଗ କଲେ ଅତି ଉତ୍ତମ ସନ୍ତାନ ଜାତ ହୁଅନ୍ତି । (ଭାଗବତ ୮ମ ସ୍କନ୍ଧ)

୧୪୬

ପଳାଶକାଠନିର୍ମିତ, ପଞ୍ଚକାଠନିର୍ମିତ, ଭଙ୍ଗା, ପୋଡ଼ା, ଚଡ଼କ ମରା କାଠ ନିର୍ମିତ, ହାତୀରହିନ୍ତ କାଠ ନିର୍ମିତ ପଲଙ୍କମାନଙ୍କରେ ଶୋଇବ ନାହିଁ । ଗାଭୀ, ସ୍ତ୍ରୀ, ଗୁରୁଜନ, ଅଗ୍ନି ମଧ୍ୟରେ ଓ ଦେବମୂର୍ତ୍ତି ଉପରେ ଶୋଇବନାହିଁ, [ ବିଷ୍ଣୁ ସଂହିତା ୭° ଅଧ୍ୟାୟ ]

୧୪୭

ବୟସ, ଗୁଣ, କୁଳ, ଧନ ଅନୁସାରେ ବେଶଭୂଷା ହେବ । ସତ୍ୟ ହୋଇଥିଲେ କାହାର ମର୍ମ କଥା କହିବ ନାହିଁ । ଦରିଦ୍ର, ହୀନାଙ୍ଗ, ବିକଳାଙ୍ଗ, ଅଧିକାଙ୍ଗ ବିଶିଷ୍ଟ ବ୍ୟକ୍ତିକୁ ଉପହାସ କରିବ ନାହିଁ ।
( ବିଷ୍ଣୁ ସଂହିତା ୭୧ ଅଧ୍ୟାୟ )

୧୪୮

ଯେଉଁ ଦେଶରେ ଚତୁର୍ବର୍ଣ୍ଣର ବ୍ୟବସ୍ଥା ନାହିଁ, ତାହାକୁ ମ୍ଳେଚ୍ଛ ଦେଶ

ବୋଲି ଜାଣିବ, ଏତଦ୍‌ବ୍ୟତୀତ ଅନ୍ୟ ବ୍ୟବସ୍ଥା ଯେ ସ୍ଥାନରେ ଅଛି, ତାହାକୁ ଆର୍ଯ୍ୟାବର୍ତ୍ତ ବୋଲି ଜାଣିବ । ( ବିଷ୍ଣୁ ସଂହିତା ୮୪ ଅଧ୍ୟାୟ )

୧୪୯

ଗଙ୍ଗାଦ୍ୱାର, ଯମୁନାଦ୍ୱାର, ଗୋଦାବରୀ, ଗୟା, କାଶୀରେ ଶ୍ରାଦ୍ଧ କଲେ ଅକ୍ଷୟ କୀର୍ତ୍ତି ହୁଏ । ( ବିଷ୍ଣୁ ସଂହିତା ୮୫ ଅଧ୍ୟାୟ )

୧୫୦

ଗାଭୀପ୍ରସବ ସମୟରେ ଦାନ କଲେ ଉତ୍ତମ ଅଟେ । ଏହାକୁ ଦ୍ୱିମୁଖୀ ଗାଭୀ କହନ୍ତି । ସମସ୍ତ ଦାନ ଅପେକ୍ଷା ବିଦ୍ୟାଦାନ ଉତ୍କୃଷ୍ଟ ଅଟେ । ଅଭୟ ଦାନ ତାହାଠାରୁ ଶ୍ରେଷ୍ଠ [ବିଷ୍ଣୁ ସଂହିତା] ।

୧୫୧

ଯେ ଭଗବାନଙ୍କର ଆଶ୍ରୟରେ ଦିନ କଟାଏ,ଲକ୍ଷ୍ମୀ ତାହାକୁ ସୁଖ ପାନ୍ତି, ଲୋକେ ତାହାକୁ ଶ୍ରୀବନ୍ତ କହନ୍ତି । (ବିଷ୍ଣୁ ସଂହିତା ୯୯ଅଧ୍ୟାୟ)

୧୫୨

ସନ୍ତାପ, ସୁକର୍ମା' ବିଦ୍ୱାନ ଓ ନୀରୋଗ ପରିବାରରୁ ବିବାହ କରିବ । ସନ୍ତାପ ଅଥଚ ହୀନକର୍ମକାରୀ, ଅସତ୍ୟବାଦୀ, ବେଶ୍ୟା, ପରସ୍ତ୍ରୀ ଆସକ୍ତ, ମଦ୍ୟପାୟୀ, କୁଷ୍ଠୀ, କୋଷ୍ଠ ବୃଦ୍ଧି ଓ ଗୋଦର ରୋଗଯୁକ୍ତ ବା ଉତ୍କଟ ରୋଗଗ୍ରସ୍ତ କୁଳରୁ ବିବାହ କରିବ ନାହିଁ । [ଯାଜ୍ଞବଳ୍କ୍ୟ ସଂହିତା]

୧୫୩

ଉନ୍ନତିର ପରିଣାମ ପତନ, ସଞ୍ଚୟର ପରିଣାମ କ୍ଷୟ, ସଂଯୋଗର ପରିଣାମ ବିଯୋଗ, ଜୀବନର ପରିଣାମ ମରଣ, [ କାତ୍ୟାୟନ ସଂହିତା ବଂଶଖଣ୍ଡ ]

୧୫୪

ଶବ ଦାହ କରି ଫେରିବା ବେଳେ ପଛକୁ ଅନାଇବା ଦୋଷାବହ । ଶବ ଦାହ କରି ଏକମୁହାଁ ହୋଇ ଘରକୁ ଆସି ସର୍ବାଗ୍ରେ ସ୍ନାନ କରିବ । ଏହା ଲୋକାଚାର ଓ ଶାସ୍ତ୍ରବିଧି । (କାତ୍ୟାୟନ ସଂହିତା ଦ୍ୱାଦଶ ଖଣ୍ଡ)

୧୫୫

ବିବାହ ପରେ ଚତୁର୍ଥୀରେ କୋଡ଼ିଏ ଆହୁତି ଦେଇ ହୋମ କରିବ । (କାତ୍ୟାୟନ ସଂହିତା ପଞ୍ଚବିଂଶ ଖଣ୍ଡ )

୧୫୬

ବେଦଜ୍ଞ, ସତ୍‌କୁଳୋଦ୍ଭବ , ଦରିଦ୍ର, ସନ୍ତୋଷଶୀଳ, ବିନୟୀ, ସର୍ବପ୍ରାଣୀହିତକାରୀ, ବେଦାଭ୍ୟାସ ଓ ତପସ୍ୟାନିରତ, ଇନ୍ଦ୍ରିୟଜୟୀ ବ୍ୟକ୍ତି ସର୍ବଶ୍ରେଷ୍ଠ । ତାହାକୁ ଦାନ ଓ ସାହାଯ୍ୟ କରିବ । (ବୃହସ୍ପତି ସଂହିତା)

୧୫୭

କୋଣସି ମହତ୍‌ବ୍ୟକ୍ତି ବା ଯେ କୌଣସି ବ୍ୟକ୍ତି ହଠାତ୍ ବିପଦ-ଗ୍ରସ୍ତ ହୋଇ ନିରୁପାୟ ହେଲେ ସହାଯ୍ୟ କରିବ ।

୧୫୮

କଳିରେ ଧର୍ମ ଅଧର୍ମଦ୍ୱାରା, ସତ୍ୟ ମିଥ୍ୟାଦ୍ୱାରା, ରାଜା ଭୃତ୍ୟଦ୍ୱାରା ପୁରୁଷ ସ୍ତ୍ରୀଦ୍ୱାରା ପରାଜିତ । (ପରାଶର ସଂହିତା ୧ମ ଅଧ୍ୟାୟ)

୧୫୯

ମାଳୀ ବଗିଚାରୁ ଫୁଲ ତୋଳି ମାଳା ପ୍ରସ୍ତୁତ କରି ଦେବସେବା ଓ

ସୁଦ୍ଧ କାର୍ଯ୍ୟ କରେ କାଣ୍ଡ ଗଛ କାଟି ନଷ୍ଟ କରେନାହିଁ । କିଂବା ଗଛ ପୋଡ଼ି ଅଙ୍ଗାର କରେ ନାହିଁ । ରାଜା ପ୍ରଜାମାନଙ୍କଠାରୁ କର ନେଇ ଦେଶସେବା ବା ଦେଶର ହିତ କରେ ବା ପ୍ରଜାମାନେ ଯେପରି ନିରାପଦରେ ସୁଖ ଶାନ୍ତିରେ ରହନ୍ତି ତହିଁର ଉପାୟ କରେ । ମାତ୍ର ନିଜ ବିଳାସରେ ପ୍ରଜାଧନ ବ୍ୟୟ କରିବା ସମ୍ପୂର୍ଣ୍ଣ ଅନ୍ୟାୟ ଓ ଗର୍ହିତ ଅଟେ । (ପରାଶର ସଂହିତା ୧ ମ ଅଧ୍ୟାୟ)

୧୭୦

ଲୁଗା କିଂବା କୌଣସି ପଦାର୍ଥକୁ ଯତ୍ନରେ ରଖିଲେ ଯେପରି ବେଶି ଦିନ ରହେ ସେହିପରି ଶରୀରପ୍ରତି ଯତ୍ନ କଲେ ଦୀର୍ଘଜୀବୀ ହୁଅନ୍ତି । ଅସାମୟିକ ସ୍ନାନ ଆହାର ଶୟନ ଗମନ ଆହାର ପରେ ଆହାର ଏ ସମସ୍ତ ଶରୀରକୁ ଶୀଘ୍ର ନଷ୍ଟ କରେ । (ପରାଶର ସଂହିତା ୮ ମ ଅଧ୍ୟାୟ) କଥାରେ କହନ୍ତି—

ଖାଇ ଗାଇଲେ ବଢ଼ଇ ବାୟୁ, ଖାଇ ଶୋଇଲେ ବଢ଼ଇ ଆୟୁ
ବସି ଖାଇଲେ ବଢଇ ପେଟ, ଖାଇ ଖାଇଲେ ଯମର ଭେଟ

୧୭୧

ରଜସ୍ୱଳା ସ୍ତ୍ରୀ ୧ମ ଦିନ ଚଣ୍ଡାଳୁଣୀ ତୁଲ୍ୟ, ୨ ୟ ଦିନ ବ୍ରହ୍ମଘାତିନୀ ତୁଲ୍ୟ, ୩ ୟ ଦିନ ରଜକୀ ତୁଲ୍ୟ ଅଟେ । ୪ର୍ଥ ଦିନ ସ୍ନାନପରେ ଶୁଦ୍ଧ ହୁଏ । ରୋଗ ବଶତଃ ରଜଃ ନିଃସୃତ ହେଲେ ଅଶୁଦ୍ଧ ନୁହେଁ । ବିବାହ ସମୟରେ ରଜସ୍ୱଳା ହେଲେ ୪ର୍ଥ ଦିନ ସ୍ନାନପରେ ବିବାହର ଅବଶିଷ୍ଟ ହୋମ କାର୍ଯ୍ୟ ଶେଷ କରିବ । [ପରାଶର ସଂହିତା ୮ମ ଅଧ୍ୟାୟ]

୧୭୨

ସକଳ ଦାନ ମଧ୍ୟରେ ଅନ୍ନଦାନ ଶ୍ରେଷ୍ଠ [ସଂବର୍ତ୍ତ ସଂହିତା ]

୧୭୩

ନଖ, ଦନ୍ତ, କେଶ, ଛିପ ଚ୍ୟୁତ ହେଲେ ଅଶୁଦ୍ଧ ହୁଅନ୍ତି ।

୧୭୪

ବହୁ ଲୋକ ଏକତ୍ର ଆହାର ସମୟରେ କାହାରକୁ ବେଶି କାହାରକୁ କମ ଦେବନାହିଁ । ଏହା ବେଦଶାସ୍ତ୍ରଜ୍ଞଙ୍କ ଓ ମୁନିଗଣ-କଥିତ । ଏହା ମଧ୍ୟ ଲୋକାଚାରରେ ଦେଖା ଯାଏ । (ବ୍ୟାସ ସଂହିତା ୪ର୍ଥ ଅଧ୍ୟାୟ)

୧୭୫

ଗୃହସ୍ଥର ୯ ଟି କର୍ମ, ୯ ଟି ଅକର୍ମ, ୯ ଟି ଗୁପ୍ତ, ୯ ଟି ପ୍ରକାଶ୍ୟ, ୯ଟି ସଫଳ, ୯ଟି ଅଫଳ ୯ଟି ପଦାର୍ଥ ସର୍ବଦା ଅଦେୟ । (ଦକ୍ଷ ସଂହିତା, ୩ୟ ଅଧ୍ୟାୟ ) ଯଥା:—

୯ ଟି କର୍ମ :— (କ) ଅଭିଷ୍ଟ ବ୍ୟକ୍ତି ଘରକୁ ଆସିଲେ ୧ ମନ, ୨ ଚକ୍ଷୁ, ୩ ମୁଖ, ୪ ବାକ୍ୟ; ଏହି ଚାରୋଟି ସମର୍ପଣକରିବ, ପରେ ୫ ପ୍ରତ୍ୟୁତ୍ଥାନ-୬ ଏହି ସ୍ଥାନକୁ ଆସନ୍ତୁ କହିବ, ୭ ଆସିବାର କାରଣ ପଚାରିବ, ୮ ମିଷ୍ଟାନ୍ନାଦିକର ଭୋଜନାଦି ଦ୍ୱାରା ସେବା କରିବ, ୯ ଯିବା ସମୟରେ ଅନୁଗମନ କରିବ —ଏହି କାର୍ଯ୍ୟଗୁଡ଼ିକ ଯତ୍ନପୂର୍ବକ କରିବ । ଅନ୍ୟବିଧି :— ୧ ବସିବାରସ୍ଥାନ, ୨ ପାଦ ଧୌତପାଇଁ ଜଳ, ୩ ବସିବାର ଆସନ, ୪ ପାଦ ଧୌତ କରଣ, ୫ ଲଗାଇବାପାଇଁ ତୈଳ ଦାନ, ୬ ଘରେ ଆହାର ସ୍ଥାନ, ୭ ଶଯ୍ୟା ପ୍ରସ୍ତୁତ କରଣ, ୮ ଆହାର୍ଯ୍ୟ ପଦାର୍ଥ ଅର୍ପଣ, ୯ ଆଚମନ ପାଇଁ ଜଳ ଦାନ । (ଖ) ୧ ସନ୍ଧ୍ୟା, ୨ ସ୍ନାନ, ୩ ଜପ, ୪ ହୋମ, ୫ ବେଦପାଠ, ୬ ଦେବପୂଜା, ୭ ବଳିବୈଶ୍ୱ, ୮ ଅତିଥିସେବା, ପିତୃଲୋକ ସେବା । (ଗ) ୧ ଦେବଗଣ, ୨ ମନୁଷ୍ୟଗଣ, ୩ ଦରିଦ୍ରବ୍ୟକ୍ତି, ୪ ଅନାଥବ୍ୟକ୍ତି ୫ ତପୀଗଣ, ୬ ମାତା, ୭ ପିତା, ୮ ଅନ୍ୟାନ୍ୟ ଗୁରୁଜନ, ୯ ବନ୍ଧୁଜନଙ୍କୁ ଯଥାଯୋଗ୍ୟ ଅଭାଗ ଦାନ ।

୯ ଟି ଅକର୍ମ :— ଯାହା କରିବା ଅନୁଚିତ ତାହା ଅକର୍ମ । ୧ ମିଥ୍ୟା କଥନ, ୨ ପରସ୍ତ୍ରୀଗମନ, ୩ ଅଭକ୍ଷ୍ୟ ଭକ୍ଷଣ । ୪ ଅଗମ୍ୟ ଗମନ

୫ ଅପେୟ ପାନ, ୬ ଚୌର, ୭ ଜୀବହତ୍ୟା, ୮ ଅଶାସ୍ତ୍ରୀୟ କାର୍ଯ୍ୟାନୁଷ୍ଠାନ ୯ ବନ୍ଧୁଜନ ପ୍ରତି ଅକାର୍ଯ୍ୟ କର୍ମ ।

୯ ଟି ଗୁପ୍ତ :—୧ ପରମାୟୁ, ୨ ଧନ, ୩ ଗୃହଚ୍ଛିଦ୍ର; ୪ ମନ୍ତ୍ରଣା, ୫ ମୈଥୁନ ୬ ଔଷଧ, ୭ ତପସ୍ୟା, ୮ ଦାନ, ୯ ଅପମାନ ପ୍ରାପ୍ତି ।

୯ ଟି ପ୍ରକାଶ୍ୟ—୧ ଆରୋଗ୍ୟ, ୨ ଋଣପରିଶୋଧ; ୩ ଦାନ, ୪ ଅଧ୍ୟୟନ ୫ ନିଜ ପଦାର୍ଥ ବିକ୍ରୟ, ୬ କନ୍ୟାଦାନ,୭ ବୃଷୋତ୍ସର୍ଗ, ୮ ବହୁଲୋକ-ଅଜ୍ଞାତ ପାପ, ୯ ଲୋକରେ ପ୍ରଶଂସାକର କାର୍ଯ୍ୟ ।

୯ ଟି ସଫଳ—୧ ମାତା, ୨ ପିତା, ୩ ଅନ୍ୟାନ୍ୟଗୁରୁଜନ, ୪ ବନ୍ଧୁଗଣ, ୫ ବିନୀତ ବ୍ୟକ୍ତି, ୬ ଉପକାରୀବ୍ୟକ୍ତି, ୭ ଦରିଦ୍ର, ୮ ଅନାଥ, ୯ ବିଶିଷ୍ଟ ବ୍ୟକ୍ତିଙ୍କୁ ଯେଉଁ ଦାନ ।

୯ ଟି ବିଫଳ—୧ ଧୂର୍ତ୍ତ,୨ ସ୍ତୁତି ବାଦକ, ୩ ମୂର୍ଖ, ୪ ଅନଭିଜ୍ଞ,୫ ଚିକିତ୍ସକ, ୬ କିତବ, ୭ ବଞ୍ଚକ, ୮ ଗ୍ରନ୍ଥକାର; ୯ ଚାରଣ ଓ ଚୌରଗଣ ଏମାନଙ୍କୁ ଦାନ ।

୯ ଟି ଅଦେୟ—୧ ଯାଚ୍ଞାଲବ୍ଧ, ୨ ଗଚ୍ଛିତ, ୩ ବନ୍ଧକୀ, ୪ ସ୍ତ୍ରୀ, ୫ ସ୍ତ୍ରୀ ଧନ ୬ ନିକ୍ଷେପ, ୭ ଉତ୍ତରାଧିକାରୀ ସୂତ୍ରେ ପ୍ରାପ୍ତ, ୮ ସର୍ବସ୍ୱ, ୯ ସାଧାରଣସମ୍ପତ୍ତି ବଂଶଥିଲେ ଏ ଗୁଡ଼ିକ ଆପଦ କାଳେ ସୁଦ୍ଧା ଅଦେୟ ।

୧୬୭

ସୁଖାଭିଳାଷୀ ବ୍ୟକ୍ତି ପରକୁ ଆପଣାର କରିବ । ଅନ୍ୟର ସୁଖ ପାଇଁ ବା ଦୁଃଖପାଇଁ ଯାହା କରିବ, ସେ ସମସ୍ତ ପରେ ନିଜେ ଭୋଗ କରିବ ।

୧୬୭

କଷ୍ଟ ନ କଲେ ଧନ ମିଳେନାହିଁ, ଧନ ନ ଥିଲେ କୌଣସି କର୍ମ କରି

ହୁଏ ନାହିଁ, କର୍ମ ନ କଲେ ଧର୍ମ ହୁଏନାହିଁ, ଧର୍ମ ନ କଲେ ସୁଖ ହୁଏ ନାହିଁ, ଅତଏବ ଯେ ସୁଖ ଗୃହେଁ, ସେ ଆଗେ କଷ୍ଟ କରୁ ଏହା ଶାସ୍ତ୍ରୀୟ ଉକ୍ତି ଅଟେ ।

୧୬୮

ଦମ୍ଭ ହଂସ୍ରଜନ୍ତୁ ତୁଲ୍ୟଅଟେ, [ ପଞ୍ଚଦଶୀ — ବେଦାନ୍ତ ଦର୍ଶନର ଉତ୍କୃଷ୍ଟଗ୍ରନ୍ଥ ]

୧୬୯

ଉତ୍ତମ ବ୍ୟକ୍ତିଙ୍କର ବହୁ ଶତ୍ରୁ, ଉତ୍ତମ ସ୍ଥାନରେ ବହୁତ ଆପଦ, ଉତ୍ତମ କାର୍ଯ୍ୟରେ ବହୁ ବାଧା, ଉତ୍ତମ ପଦାର୍ଥରେ ସମସ୍ତଙ୍କର ଦୃଷ୍ଟି, ଚନ୍ଦନ ବୃକ୍ଷରେ ସର୍ପର ବାସସ୍ଥାନ ।

୧୭୦

ବାଇଗଣ ଓ ଲଙ୍କାମରିଚ ପ୍ରଭୃତି କେତେକ ଗଛରେ ଯେତେ ଖତ ଦେଲେ ମୋଟ ହୁଏନାହିଁ, କିନ୍ତୁ ଆମ୍ବ ପ୍ରଭୃତି ବୃକ୍ଷରେ ଖତ ନ ଦେଇ ଲଗାଇଲେ ମଧ୍ୟ ମୋଟ ହୁଏ । ସେହିପରି କି ମନୁଷ୍ୟ କି ପଶୁ ପୂର୍ବ ତପସ୍ୟା ଫଳରେ ସଂସାରରେ ଦୁଃଖ ସୁଖ ଭୋଗନ୍ତି । ଏଥିରେ ଈର୍ଷ୍ୟାନ୍ୱିତ ହେବା ବୃଥା ମାତ୍ର ।

୧୭୧

କର୍ମଭୋଗ ପରେ ସୁଖ, ସୁଖ ଭୋଗପରେ କର୍ମ । ( ପଞ୍ଚଦଶୀ, ୧ମ ପରିଚ୍ଛେଦ ୨୯ ଶ ଶ୍ଳୋକ )

୧୭୨

ମାୟାରୁ ସ୍ନେହ ଜନ୍ମେ,, ମାୟା ଦ୍ୱାରା ଈଶ୍ୱର ପ୍ରାପ୍ତ ହୁଅନ୍ତି । ମାୟା ଈଶ୍ୱରାଧୀନ, ତେଣୁ ମାୟାଧୀନ ପ୍ରାଣୀ ସୁଖୀ ଅଟେ । ମାୟାରୁ ରହିତ ହେବୁ ପ୍ରାଣୀମାନେ ଅବିଦ୍ୟାଜଡ଼ିତ ହୋଇ ଦୁଃଖ ଭୋଗ କରନ୍ତି, କାରଣ ପ୍ରକୃତିର ଧର୍ମ ଯେ ଶୁଦ୍ଧ ସତ୍ୱ ଗୁଣ ତାହାକୁ ମାୟା କହନ୍ତି । ଅବିଦ୍ୟା ରଜ ତମ ଗୁଣ

ମିଶ୍ରିତ ଅଛି । ଅତଏବ ପ୍ରାଣୀମାନେ ରଜ ତମ ଗୁଣର ଅଧୀନ ଅଟନ୍ତି । ମାୟା କେବଳ ଈଶ୍ୱରଙ୍କଠାରେ ଥାଏ(ପଞ୍ଚଦଶୀ,୧ମ ପରିଛେଦ ୧୬ଶ ଶ୍ଳୋକ)

୧୭୩

ଯେ ପାପ କର୍ମ ବା ଅନ୍ୟାୟ କର୍ମକୁ କରାଏ, ସେ ତିନ ଭାଗ ଓ ଯେ କରେ ସେ ଏକଭାଗ ଦୋଷରେ ଦୋଷୀ ହୁଏ । [ ବ୍ରହ୍ମ ବୈବର୍ତ୍ତ ପୁରାଣ ] ଆଧୁନିକ ଆଇନ ଅନୁସାରେ ଚୋର ଓ ଚୋର ମାଉସୀ ଉଭୟ ଦଣ୍ଡିତ ହୁଅନ୍ତି ।

୧୭୪

ଥରେ ଲକ୍ଷ୍ମୀ ଶ୍ରୀ ଭଗବାନଙ୍କୁ କହିଲେ,"ମୁଁ କେବେ ଆପଣଙ୍କୁ ହସିବାର ଦେଖି ନାହିଁ," ଭଗବାନ୍ କହିଲେ, "ମୁଁ ୨ଟି କଥାରେ ହସେ" । ପ୍ରଥମ କଥା ଏହି ଯେ ଯେତେବେଳେ ମୁଁ ଲୋକକୁ ଉଠାଇବାକୁ ଇଚ୍ଛା କରେ, ସେତେବେଳେ ଯଦି କେହି ବାଧା ଦିଏ,ଯେତେବେଳେ ମୁଁ ଲୋକକୁ ପକାଇବାକୁ ଇଚ୍ଛାକରେ, ସେତେବେଳେ ଯଦି କେହି ତାକୁ ଉଠାଇବାକୁ ଚେଷ୍ଟାକରେ । ଈଶ୍ୱର ପ୍ରାଣୀର କର୍ମ ଅନୁସାରେ ଫଳ ଦିଅନ୍ତି । ଯେପରି ଯେ କର୍ମ କରିବ, ସେପରି ସେ ଫଳ ପାଇବ ।

୧୭୫

ଧର୍ମ କାର୍ଯ୍ୟ ଚିରସ୍ଥାୟୀ ଓ ଅନ୍ୟ କାର୍ଯ୍ୟ ଅତାଇ ଦିନଅ ।

୧୭୬

ଯେଉଁମାନେ ସ୍ୱୈଣ ଅଟନ୍ତି, ସେମାନଙ୍କର ସ୍ତ୍ରୀମାନେ ଇଚ୍ଛାନୁସାରେ ଯେଉଁଠାକୁ ଯିବାକୁ ମନ କରନ୍ତି, ସେଠାକୁ ଯାନ୍ତି [ପରାଶର ସଂହିତା]

୧୭୭

ସତ୍ୟ ଚିରକାଳ ଅଛି । ନାଭାଗ ଓ ତାଙ୍କ ପିତା ନାଭଗ ଉଭୟ ସତ୍ୟ କଥନ ଯୋଗୁଁ -ରୁଦ୍ରଙ୍କ ନିକଟରୁ ନାଭାଗ ଧନସମ୍ପତ୍ତି ପାଇ ସୁଖୀ ହେଲେ । [ଭାଗବତ ୯ମ ସ୍କନ୍ଧ ୫ମ ଅଧ୍ୟାୟ]

୧୭୮

ଯଦି କେହି ମହତ୍ ବ୍ୟକ୍ତିର ଅନିଷ୍ଟ କରେ, ତେବେ ତାହାର କୋପ କରିବାର ଅନୁଚିତ। କାରଣ ଯଦି ସେ କୋପ କରେ, ତେବେ ତାହାର ମହତ ପଣିଆ ଊଣା ହୋଇଯାଏ [ଭାଗବତ ୯ମ ସ୍କନ୍ଧ ୫ମ ଅଧ୍ୟାୟ]

୧୭୯

ଯଦି ନଦୀର ସ୍ରୋତ ଊଣା ହୋଇଯାଏ, ବା ବନ୍ଦ ହୋଇଯାଏ; ତେବେ ଜଳଜନ୍ତୁମାନେ ନଷ୍ଟ ହୁଅନ୍ତି ଓ କୁମ୍ଭୀର ପ୍ରଭୃତି କେତେକ ଜଳଜନ୍ତୁ କଷ୍ଟ ପାଇ ଅନ୍ୟର ଅନିଷ୍ଟ କରନ୍ତି, ସେହିପରି ଉପଦେଷ୍ଟା କର୍ମଗୁରୁ, ଗୁରୁଜନ ବା ବୟୋଧିକ ବ୍ୟକ୍ତିଙ୍କର ସ୍ନେହ ନିମ୍ନଶ୍ରେଣୀସ୍ଥ ଲୋକଙ୍କଠାରୁ ଊଣା ହୋଇଗଲେ ସେମାନେ ନଷ୍ଟ ହୁଅନ୍ତି ଓ ଅନ୍ୟର ଅନିଷ୍ଟ କରିବାକୁ ଇଚ୍ଛା କରନ୍ତି।

୧୮୦

କୌଣସି ସ୍ଥାନକୁ ଆଲୋକ ଆସିବା ପୂର୍ବରୁ ଯେପରି ତାହାର ଅନ୍ଧକାର ନଷ୍ଟ ହୋଇ କ୍ରମଶଃ ଆଲୋକ ବ୍ୟାପିଯାଏ, ସେହିପରି କାହାରି ବିପଦ ପରିବର୍ତ୍ତରେ ସମ୍ପଦ ଆସିଲେ ମଙ୍ଗଳର ସୂଚନା ଦେଖାଯାଏ। ଆହୁରି ଆଲୋକ ଅନ୍ତରିତ ହୋଇ ଅନ୍ଧକାର ମାଡ଼ି ଆସିବା ସଦୃଶ ସୁଖ ପରି-ବର୍ତ୍ତରେ ଦୁଃଖ ଆସିବାର ଥିଲେ ପୂର୍ବରୁ ଅମଙ୍ଗଳର ସୂଚନା ଦେଖା ଯାଏ।

୧୮୧

ନାଗମାନେ ଗନ୍ଧର୍ବମାନଙ୍କୁ ଯୁଦ୍ଧରେ ନପାରି ମାନ୍ଧାତାଙ୍କର ଅଣନାତି ( ନାତିର ପୁଅ ) ହାରିତକୁ ରସାତଳରେ ନେଇ ଯାଇ ନାଗକନ୍ୟା "ନର୍ମଦା" କୁ ବିବାହ ଦେଇ ଶରଣ ପଶିଲେ। ହାରିତ ଗନ୍ଧର୍ବମାନଙ୍କ ଯୁଦ୍ଧରେ ପରାସ୍ତ କରି ନାଗମାନଙ୍କୁ ଅଭୟ ପ୍ରଦାନ କଲେ। ତେଣୁ ନାଗମାନେ

ବର ଦେଇ ଥିଲେ, "ଯେ ଶୟନ କାଳରେ, ରାତ୍ରରେ, ଦିବସରେ, ସନ୍ଧ୍ୟା ସମୟରେ ତିନ ଥର 'ନର୍ମଦା' ନାମ ଧରିବ, ତାକୁ ସର୍ପାଘାତ ହେବନାହିଁ।" ( ଭାଗବତ ୯ମ ସ୍କନ୍ଧ ୭ମ ଅଧ୍ୟାୟ )। ଆସ୍ତିକ ଋଷି ନାଗମାନଙ୍କୁ ଜନ୍ମେଜୟ ମହାରାଜାଙ୍କ ସର୍ପ ଯଜ୍ଞରୁ ରକ୍ଷା କରିଥିବାରୁ ନାଗମାନେ ସନ୍ତୋଷ ହୋଇ ବର ଦେଇ ଥିଲେ, "ଯେ ଆସ୍ତିକ ନାମ ଧରିବ, ତାକୁ ସର୍ପାଘାତ ହେବ ନାହିଁ।" ( ମହାଭାରତ)। କର୍କୋଟ ନାମକ ନାଗ ଅଭିଶପ୍ତ ଗନ୍ଧର୍ବ ଥିଲା। ନଳ ରାଜା ତାକୁ ବନାଗ୍ନିରୁ ରକ୍ଷା କରିଥିବାରୁ ଯେ "ନଳକର୍କୋଟ" ନାମ ଧରିବ, ତାକୁ ସର୍ପାଘାତ ହେବନାହିଁ। ( ନଳ ଚରିତ )

୧୮୨

ଯେଉଁ ମନୁଷ୍ୟର ବୁଝିବାର ଶକ୍ତି ନାହିଁ, ସେ ଜଡ଼ ପଦାର୍ଥ ଲୋଷ୍ଟ୍ର ପରି ଅଟେ। ( ପଞ୍ଚଦଶୀ ୩ୟ ପରିଚ୍ଛେଦ ୧୯ ଶ ଶ୍ଳୋକ )

୧୮୩

ଯେ ଯେପରି ସେ ଅନ୍ୟଙ୍କୁ ସେହି ପରି ଭାବେ। ଯେ ସତ୍ ସେ ସମସ୍ତଙ୍କୁ ସତ୍, ଯେ ଅସତ୍ ସେ ସମସ୍ତଙ୍କୁ ଅସତ୍ ଭାବେ। ଥରେ ଦ୍ରୋଣ ଗୁରୁ ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନଙ୍କୁ ପଚାରିଥିଲେ, "ପୃଥିବୀରେ ଉତ୍ତମ ବ୍ୟକ୍ତି କିଏ ଓ ମନ୍ଦ ବ୍ୟକ୍ତି କିଏ ? ସେମାନଙ୍କୁ ଯଥେଷ୍ଟ ସମୟ ମଧ୍ୟ ଦିଆ ଯାଇଥିଲା। ସମୟ ଅତିବାହିତ ହେଲାରୁ ଉତ୍ତରରେ ଯୁଧିଷ୍ଠିର କହିଲେ— "ପୃଥିବୀରେ ସମସ୍ତେ ଉତ୍ତମ ବ୍ୟକ୍ତି," ଦୁର୍ଯ୍ୟୋଧନ କହିଲେ— "ପୃଥିବୀରେ ସମସ୍ତେ ମନ୍ଦ ବ୍ୟକ୍ତି"।

୧୮୪

ଯେ ସର୍ବଦା ଧନ ସମ୍ପତ୍ତି ବିଷୟ ଭାବେ ସେ ମୂର୍ଖ, ତାହାର ବୁଦ୍ଧି ଓ ସ୍ମୃତି ବିନଷ୍ଟ ହୋଇ କ୍ରୋଧ ଜାତ ହୁଏ। କ୍ରୋଧ ମୃତ୍ୟୁକୁ ଘଟାଏ। (ପଞ୍ଚଦଶୀ ୪ଥ ଅଧ୍ୟାୟ ୬୦।୬୧ ଶ୍ଳୋକ )

୧୮୫

ଯାହାକୁ ଲୋକେ ଡରନ୍ତି, ତାହାର ବହୁତ ଶତ୍ରୁ, ତେଣୁ ତାହାର ଜୀବନ ସଙ୍କଟାପନ୍ନ ଅଟେ ।

୧୮୬

ଯେପରି ପିତା ପୁତ୍ର ଦ୍ୱାରା ତାଡ଼ିତ ବା ତିରସ୍କୃତ ହୋଇ ପୁତ୍ରକୁ ସ୍ନେହ କରେ ସେହିପରି ଜ୍ଞାନୀ ବ୍ୟକ୍ତିମାନେ ଅଜ୍ଞାନୀଙ୍କ ଦ୍ୱାରା ଅପମାନିତ ହୋଇ କ୍ରୋଧ ନ କରି ସେମାନଙ୍କୁ ଉପଦେଶ ଦେବେ । ( ପଞ୍ଚଦଶୀ ୭ମ ପରିଚ୍ଛେଦ, ୨୮୭।୨୮୮।୨୮୯ ଶ୍ଳୋକ )

୧୮୭

ଖଣି ମଧ୍ୟରେ ବହୁତ ଖନନ କଲେ ମଣି ଲବ୍‌ଧ ହୁଏ । ବହୁତ କଷ୍ଟ ପରେ ସତ୍ କାର୍ଯ୍ୟରେ ସିଦ୍ଧି ମିଳେ । ବହୁ କଷ୍ଟରେ ଈଶ୍ୱର ଲାଭ ହୁଏ । ( ପଞ୍ଚଦଶୀ , ୯ମ ପରିଚ୍ଛେଦ, ୧୫୨।୧୫୩ ଶ୍ଳୋକ )

୧୮୮

ଅପୁତ୍ରିକ ବ୍ୟକ୍ତିର ଧନାଢ଼ି ସମସ୍ତ କେବଳ କ୍ଷୋଭର କାରଣ ହୁଏ ( ପଞ୍ଚଦଶୀ, ଦ୍ୱାଦଶ ପରିଚ୍ଛେଦ, ୮୭ ଶ୍ଳୋକ )

୧୮୯

ଆତ୍ମା ଅପେକ୍ଷା ପୁତ୍ର ଅଧିକ ସ୍ନେହାସ୍ପଦ ଅଟେ । ପୁତ୍ରଦ୍ୱାରା ସମସ୍ତ ଧର୍ମ କାର୍ଯ୍ୟ କରାଯାଇ ସ୍ୱର୍ଗ ପ୍ରାପ୍ତିର ସମ୍ଭାବନା ଥିବାରୁ ପୁତ୍ର ଆତ୍ମା ବା ତାହା ଠାରୁ ଆଦରଣୀୟ । ପୁତ୍ର ନଥିଲେ ସଂସାରରେ ସୁଖ ନାହିଁ, ସମସ୍ତ ପଦାର୍ଥ ଅପ୍ରିୟ ଅଟେ । ( ଯାଜ୍ଞବଲ୍କ୍ୟ ସଂହିତା )

୧୯୦

ମହତ୍ ବ୍ୟକ୍ତି କ୍ରୋଧ କଲେ ତାଙ୍କୁ କେହି ତ୍ୟାଗ କରନ୍ତି ନାହିଁ ।

ଶ୍ରୀକୃଷ୍ଣ ଚନ୍ଦ୍ର ଶିଶୁପାଳ ପ୍ରତି କ୍ରୋଧ କରି ତାକୁ ବଧ କଲେହେଁ ଶିଶୁପାଳ ଆତ୍ମା ତାଙ୍କ ଦେହରେ ଲୀନ ହେଲା । ଜଳ ମହତ୍, ସେ ଉତ୍ତପ୍ତ ହେଲେହେଁ ଲୋକେ ତହିଁରେ ସ୍ନାନ କରନ୍ତି । ପବନ ଉତ୍ତପ୍ତ ହେଲେ ସୁଦ୍ଧା ତାକୁ ନିଃଶ୍ୱାସରେ ଗ୍ରହଣ କରି ପ୍ରାଣ ଧାରଣ କରନ୍ତି । ମହତ୍ ପୁରୁଷମାନେ ପର୍ବତ ପରି ଅଟଳ ଅଟନ୍ତି, ଟେକା ପର୍ବତରେ ଲାଗି ଚୂର୍ଣ୍ଣ ହୋଇଯାଏ, ମାତ୍ର ପର୍ବତ ଅଟଳ ଥାଏ । ସେହିପରି ମହାପୁରୁଷମାନଙ୍କୁ କେହି କିଛି ଦୋଷା-ରୋପ କଲେ ସେମାନେ କ୍ରୋଧ ନ କରିବା ଉଚିତ ।

୧୯୧

ସ୍ରୋତ ଯେପରି ନିମ୍ନସ୍ଥ ଶିଳାଖଣ୍ଡକୁ ବିଲୋଡ଼ିତ କରି ନ ପାରେ, ସେହିପରି କୌଣସି ଦୁଃଖ, ସୁଖ, ଆପଦ ବିପଦ ବୁଦ୍ଧିମାନ୍ ବ୍ୟକ୍ତିଙ୍କୁ ବିଚଳିତ କରି ପାରେ ନାହିଁ ।

୧୯୨

ସ୍ତ୍ରୀବଶ ହୋଇ ମାୟାମୃଗର ପଶ୍ଚାଦ୍ଧାବନ ହେତୁ ରାମଚନ୍ଦ୍ର ସୀତାଙ୍କୁ ହରାଇଲେ ଏବଂ ବହୁ କଷ୍ଟ ପାଇଲେ, ଦଶରଥ ସ୍ତ୍ରୀବଶ ହୋଇ ରାମଚନ୍ଦ୍ରଙ୍କୁ ବନକୁ ପଠାଇ ଦୁଃଖରେ ପ୍ରାଣ ହରାଇଲେ । ଅର୍ଜୁନ ଦ୍ରୋପଦୀଙ୍କ ଅନୁ-ରୋଧରେ ଅକାଳ ଆମ୍ବ ତୋଳିବାରୁ ବିପଦରେ ପଡ଼ିଲେ । ନହୁଷ ରାଜା ଇନ୍ଦ୍ରାଣୀଙ୍କ କଥାରେ ଋଷିମାନଙ୍କ ଦ୍ୱାରା ନିଜର ଶିବିକା ବହନ କରାଇ ଅଧୋଗତି ଲଭିଲେ । ରାବଣ ସୂର୍ପଣଖା କଥାରେ ସୀତା ହରଣ କରି ସବଂଶରେ ନାଶଗଲା । ଅତଏବ ସ୍ତ୍ରୀ ବୁଦ୍ଧିରେ ଯେ ପଡ଼େ ସେ ବିପଦଗ୍ରସ୍ତ ହୁଏ । କଥାରେ ଅଛି—ସ୍ତ୍ରୀ ବୁଦ୍ଧିରେ ଜଗନ୍ନାଥ ମହାପ୍ରଭୁ ଖଣ୍ଡିଆ ।

୧୯୩

ଭାରତ ଯୋଗପ୍ରଧାନ ଦେଶ । ଯେଦିନୁ ଭାରତରୁ ଯୋଗବିଦ୍ୟା ଚାଲିଣି, ସେଦିନୁ ଭାରତର ଲୋକେ କ୍ଷୀଣାୟୁ, ହୀନବୀର୍ଯ୍ୟ, ଦରିଦ୍ର ଓ ପରା-ଧୀନ । ଅତଏବ ଭାରତ ପକ୍ଷରେ ଯୋଗସାଧନ ଶ୍ରେଷ୍ଠ କାର୍ଯ୍ୟ । ଯୋଗଦ୍ୱାରା ଭାରତ ଅସାଧ୍ୟ ସାଧନ କରିଛି । ବହୁ କାଳ ଅଜେୟ ଥିଲା । ବର୍ତ୍ତମାନ ମଧ୍ୟ ଯୋଗୀମାନେ ଅସାଧ୍ୟ କର୍ମ ଦେଖାଇ ଭାରତକୁ ବିସ୍ମିତ କରନ୍ତି । "ଯୋଗ

ବଳରେ ନର୍ମି ରାଜାଙ୍କର ଶରୀର ମନ୍ଥନ କରି ମିଥିଳ ନାମକ ପୁତ୍ର ଉତ୍ପାଦନ କରି ରାଜବଂଶ ରକ୍ଷା କରାଯାଇ ଥିଲା" । (ଭାଗବତ ୯ମ ସ୍କନ୍ଧ ତ୍ରୟୋଦଶ ଅଧ୍ୟାୟ )

୧୯୪

ପୌଷମାସର ପ୍ରଥମରୁ ଶେଷ ପର୍ଯ୍ୟନ୍ତ ଦିବସମାନ ନିମ୍ନଲିଖିତ ମତେ ଦ୍ୱାଦଶ ମାସର ଲକ୍ଷଣାକ୍ରାନ୍ତ । ଯେଉଁ ମାସରେ ଯେପରିଭାବ ହେବ, ସେହି ସେହି ଦିନରେ ସେପରି ଭାବ ହେବ ! ପୌଷମାସର ପ୍ରଥମ ଦି ୧୫ ନ ପୌଷ ମାସର ଲକ୍ଷଣଯୁକ୍ତ । ଦ୍ୱିତୀୟ ୨୫ ଦିନ ଜ୍ୟେଷ୍ଠମାସର ଲକ୍ଷଣଯୁକ୍ତ, ତୃତୀୟ ୨୫ ଦିନ କାର୍ତ୍ତିକ ମାସର ଲକ୍ଷଣଯୁକ୍ତ, ଚତୁର୍ଥ ୨୫ ଦିନ ଚୈତ୍ର ମାସର ଲକ୍ଷଣଯୁକ୍ତ , ୫ମ ଦି୨୫ ନ ଭାଦ୍ର ମାସର ଲକ୍ଷଣଯୁକ୍ତ, ୬ଷ୍ଠ ଦି ୨୫ନ ମାଘ ମାସର ଲକ୍ଷଣଯୁକ୍ତ, ତହିଁପର ଦି୨୫ନ ଆଷାଢ ମାସର ଲକ୍ଷଣଯୁକ୍ତ, ତହିଁପର ଦି ୨୫ ନ ମାର୍ଗଶିର ମାସର ଲକ୍ଷଣଯୁକ୍ତ, ତହିଁ ପର ଦି ୨୫ନ ବୈଶାଖ ମାସର ଲକ୍ଷଣଯୁକ୍ତ, ତହିଁପର ଦି ୨୫ ନ ଆଶ୍ୱିନ ମାସର ଲକ୍ଷଣ-ଯୁକ୍ତ, ତହିଁପର ଦି ୨୫ନ ଫାଲ୍ଗୁନ ମାସର ଲକ୍ଷଣଯୁକ୍ତ, ତହିଁପର ଦି ୨୫ ନ ଶ୍ରାବଣ ମାସର ଲକ୍ଷଣଯୁକ୍ତ । ଏହିପରି ପୌଷମାସ ଦି ୨୯ ନ ହୁଏ । ଯେଉଁ ବର୍ଷ ପୌଷମାସ ଦି୩୦ନ ହୁଏ, ସେ ବର୍ଷ ପ୍ରଥମ ଦି୧୫ ନ ପରିବର୍ତ୍ତରେ ଦି୨୫ନ ପୌଷମାସ ଲକ୍ଷଣାକ୍ରାନ୍ତ ।

୧୯୫

କର୍ତ୍ତବ୍ୟ କର୍ମ୍ମ ଧର୍ମ ଅଟେ । ଅଭିମନ୍ୟୁ ମରିଗଲେ, ତହିଁ ପରଦିନ ଅର୍ଜୁନ ପୁତ୍ର ଶୋକ ତ୍ୟାଗ କରି ପୂର୍ବ ପରି ଧର୍ମରେ ନିରତ ହେଲେ ।

[ ମହାଭାରତ ]

୧୯୬

ଯେଉଁମାନେ ପିତା, ମାତା, ଗୁରୁଜନ, ଦେବତା, ବ୍ରାହ୍ମଣଙ୍କୁ ଭକ୍ତି କରନ୍ତି ନାହିଁ, ସେମାନଙ୍କର ଦେହ ପୂର୍ବ ଜନ୍ମରେ ଅଶୁଚି ଥାଏ, ଯଦି ସେମାନେ ତୀର୍ଥ ପର୍ଯ୍ୟଟନ, ଗଙ୍ଗାସ୍ନାନ, ଏକାଦଶୀ ଉପବାସ, ପୂର୍ଣ୍ଣିମା ଅମା-

ବାସ୍ୟା ରଜନିରେ ଆହାର ନ କରନ୍ତୁ, ତେବେ ସେମାନଙ୍କର ଦେହ ଶୁଦ୍ଧ ହୋଇ ପର ଜନ୍ମରେ ଉପକାର ହୁଏ । [ ବିଜୟ କୃଷ୍ଣ ଗୋସ୍ୱାମୀଙ୍କ କଥିତ କୁଳଦା ବ୍ରହ୍ମଚାରୀଙ୍କର ୨ୟ ଖଣ୍ଡ ଡାଏରି ]

୧୯୭

ପତନ ସମୟ ଆସି ଉପସ୍ଥିତ ହେଲେ ଖୁବ୍ ଉନ୍ନତ ହୁଏ । ଯେପରି ସମୁଦ୍ରର ଜୁଆର ଭଙ୍ଗାରେ ନୌକା ଖୁବ୍ ଆନ୍ଦୋଳିତ ହୋଇ ସ୍ଥିର ହୋଇ ଯାଏ । ବୃକ୍ଷ ଯେପରି ପୃଥିବୀରୁ ରସ ଗ୍ରହଣ କରି ଫଳ ପୁଷ୍ପରେ ଶୋଭିତ ହୁଏ, ସେହିପରି ମନୁଷ୍ୟ ଉପଦେଶ ଗ୍ରହଣ କରି ସୁନ୍ଦର ହୁଏ । ( ପୂର୍ବୋକ୍ତ ତୃତୀୟ ଖଣ୍ଡ ଡାଏରି )

୧୯୮

ସନ୍ ୧୨୯୮ ସାଲ ଶ୍ରାବଣ ୧୪ଦିନ ବୁଧବାର ଦିବା ୨ଘଣ୍ଟାକ ସମୟରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଇହଧାମ ତ୍ୟାଗକରି ସ୍ୱର୍ଣ୍ଣ ରଥରେ ବସି, ଦେବକନ୍ୟା ଅପ୍ସରା ପରିବୃତ ପତାକା ଗୀତ ବାଦ୍ୟ ଯୁକ୍ତହୋଇ ପଶ୍ଚିମା-କାଶରେ ଯାଉ ଥିବାର ଦୃଶ୍ୟ ବିଜୟ କୃଷ୍ଣ ଗୋସ୍ୱାମୀ ଦେଖି ଶିଷ୍ୟମାନଙ୍କୁ କହିବାର ପରେ ମୃତ୍ୟୁ ଖବର ଆସିବାରୁ ସ୍କୁଲ କଲେଜ ବନ୍ଦ ହେଲା । ( ପୂର୍ବୋକ୍ତ ୩ୟ ଖଣ୍ଡ ଡାଏରି )

୧୯୯

ସ୍କୁଲ କଲେଜ ପିଲାମାନଙ୍କ ଦ୍ୱାରା ଦେଶର ମଙ୍ଗଳ ଓ ଉଦ୍ଧାର ହେବ । ସେମାନେ ପୂର୍ବ ବ୍ରହ୍ମଚାରୀଙ୍କ ପରି ବ୍ରହ୍ମଚର୍ଯ୍ୟ ରଖି ଗୁରୁ ଭକ୍ତ ହୋଇ ଶିକ୍ଷା ଲଭିବା ଶ୍ରେୟସ୍କର । ଆଜ କାଲି ପୂର୍ବପରି ଗୁରୁଶିଷ୍ୟଙ୍କ ବ୍ୟବହାର ଦେଖା ଯାଉ ନ ଥିବାରୁ ଉକ୍ତ ଆଶା ସୁଦୂର ପରାହତ । [ପୂର୍ବୋକ୍ତ ୩ୟ ଖଣ୍ଡ ଡାଏରି ]

୨୦୦

କୁଳଦା ବ୍ରହ୍ମଚାରୀଙ୍କ ନାରାୟଣ ମନ୍ଦିରକୁ ଜଣେ ମେମ୍ ଖାଦ୍ୟଦ୍ରବ୍ୟ

ହୋଇ ଯିବାର ସ୍ୱପ୍ନ ତାଙ୍କର ବୃତ୍ତାନ୍ତ ଦେଖି ବଳଦେବ କୃଷ୍ଣଙ୍କୁ କହିବାରୁ ସେ କହିଲେ, "ବର୍ତ୍ତମାନ ଲକ୍ଷ୍ମୀ ପାଣ୍ଡବଙ୍କ ଘରେ ଅଛନ୍ତି । କାରଣ ଦ୍ରୌପଦୀଙ୍କ ଉପରେ କୁରୁ ସଭାରେ ଯେଉଁ ଅତ୍ୟାଚାର ହୋଇଥିଲା, ସେ ପାପରୁ ଅଦ୍ୟାପି ଭାରତ ମୁକ୍ତ ହୋଇ ନାହିଁ ।"(ପୂର୍ବୋକ୍ତ ଡାଏରି ୩ୟ ଖଣ୍ଡ)

୨୦୧

ଗୁଣ କହିଲେ ସ୍ୱଭାବ ଓ ଧନୁର ଗୁଣ ବୁଝାଏ । ଗୁଣ ବଂଶ ଖଣ୍ଡକୁ ନମ୍ର କରିଦିଏ । ସେହି ଗୁଣକୁ ଶର ଯାଇ ପ୍ରାଣୀର ପ୍ରାଣ ନିଏ । ସେହି ଗୁଣ ମନୁଷ୍ୟକୁ ନମ୍ର କରାଏ । ଯଦି ମନୁଷ୍ୟର ସେହି ଗୁଣ ସତ୍‌କାର୍ଯ୍ୟରେ ନ ଲାଗେ, ତେବେ ତାହା ଅନିଷ୍ଟକର ହୁଏ ।

୨୦୨

ନିଜକୁ ହୀନରୁ ହୀନ ଜ୍ଞାନ କଲେ ଭକ୍ତିଯୋଗ ଆରମ୍ଭ ହୁଏ । ନିଜକୁ ଭଗବାନଙ୍କର ଚରଣ ତଳେ ସମର୍ପଣ କଲେ ସମସ୍ତ ବିଷୟର ତତ୍ତ୍ୱ ମିଳେ । ଏହାକୁ ଜ୍ଞାନଯୋଗ କହନ୍ତି । (କୁଳଦା ବ୍ରହ୍ମଚାରୀଙ୍କର ୩ୟ ଖଣ୍ଡ ଡାଏରି)

୨୦୩

ନୀତିଶାସ୍ତ୍ର ଅଗାଧ ଜଳପୂର୍ଣ୍ଣ ପାଦଚ୍ଛାୟାନ ପୁଷ୍କରିଣୀ ତୁଲ୍ୟ ଅଟେ । ଶତ୍ରୁକୁ ଯେ ଭୟ କରେ, ତାହାର ସ୍ତ୍ରୀ ଲୋକନିନ୍ଦା ଭୟରେ ତାହାଠାରୁ ପଳାଏ । ନୀତିଶାସ୍ତ୍ରରେ ପଥଦର୍ଶୀ ଜ୍ଞାନୀ ବ୍ୟକ୍ତି କୋଟିକେ ଗୋଟିଏ ମିଳେ । ନିଶାକର କ୍ଷୀଣ ଓ ବକ୍ର ହୋଇ ସୁଦ୍ଧା ପରେ ପୂର୍ଣ୍ଣାକାର ଧାରଣ କରି ଲୋକ-ପୂଜ୍ୟ ହୁଏ । ରାଜା କ୍ଷୀଣ, ଦୁର୍ବଳ, ନିଃସ୍ୱ ହେଲେ ସୁଦ୍ଧା ପ୍ରଜା ନିକଟରେ ପୂଜ୍ୟ । ନିରୁତ୍ସାହ ବ୍ୟକ୍ତିର ବିପଦ ସବୁବେଳେ, ତାହାର ସୁଖର ଆଶା ନ ଥାଏ, ମାନୀ ଓ ମନସ୍ୱୀ ବ୍ୟକ୍ତି ଆପଣା କ୍ଷମତାରେ ବିପଦ ବିନାଶ କରେ । ଲଘୁ ପୁରୁଷମାନେ ଶ୍ରୀ ଲଭନ୍ତି ନାହିଁ । ବିଷାଦରେ ଲକ୍ଷ୍ମୀ ନ ଆସି ଶକ୍ତିରେ ଆସନ୍ତି । ଏକଥା ସବୁ ଭୀମ ବନବାସ ସମୟରେ ଯୁଧିଷ୍ଠିରଙ୍କୁ କହିବାରୁ ସେ କହିଲେ, "ସତ୍ୟ ଲଙ୍ଘିଲେ ସ୍ୱୟଂ ଶ୍ରୀକୃଷ୍ଣ ସହାୟ ହେବେ ନାହିଁ । ଯାବତ୍-

ବଳ ଓ ସ୍ୱପକ୍ଷୀୟ ବ୍ୟକ୍ତି ମାନେ ଅସନ୍ତୁଷ୍ଟ ହେବେ ।"[୧୩୩୫ ସାଲ କାର୍ତ୍ତିକ ୭ମ ସଂଖ୍ୟା ମୁକୁର]

୨୦୪

ଫୁଲରୁ ମଧୁ ସରିଲେ ମଧୁପ ପଳାଏ, ସୁନ୍ଦର ପୁରୁଷ ରୁଗ୍ଣ ହେଲେ ବା ମଲେ ବେଶ୍ୟା ତ୍ୟାଗକରେ,ରାଜା ଅଯୋଗ୍ୟ ହେଲେ ପ୍ରଜାତ୍ୟାଗକରନ୍ତି, ବିଦ୍ୟାପଠନ ଶେଷହେଲେ ଶିଷ୍ୟ ଗୁରୁଙ୍କୁ ଛାଡ଼ନ୍ତି,ଦକ୍ଷିଣା ପାଇଲେବିପ୍ର ଯଜମାନଙ୍କୁ ଛାଡନ୍ତି,ଅତିଥି ଖାଇପିଇ ସାରିଲେ ନ କହି ଚାଲିଯାଏ; ବନ ପୋଡ଼ି ଗଲେ ପଶୁମାନେ ଛାଡ଼ି ପଳାନ୍ତି,ପରନାରୀ ପରପୁରୁଷ ରମଣପରେ ପରସ୍ପରକୁ ପାଶୋରନ୍ତି; ଆଖୁରୁ ରସ ସରିଲେ ତାକୁ ଜାଳି ଦିଅନ୍ତି । ଏହିପରି ସ୍ୱାର୍ଥ ନ ଥିଲେ କେହି କାହାରକୁ ପଚାରେ ନାହିଁ । (ଭାଗବତ ୧୦ମ ସ୍କନ୍ଧ, ଦ୍ୱାରିକାଲୀଳା )

୨୦୫

ଆଳସ୍ୟପରାୟଣ ବ୍ୟକ୍ତିଠାରୁ ଚଞ୍ଚଳା ଚପଳା ପରି ପଳାନ୍ତି ।

୨୦୬

ଛାତ୍ର ଜୀବନ ଅତି କଠିନ ଅଟେ; ବହୁ କଷ୍ଟ ସ୍ୱୀକାର କଲେ ଶିକ୍ଷା ସଫଳ ହୁଏ । [ମହାଭାରତ, କଚ ଚରିତ, ଭାଗବତ ୧୦ମ ସ୍କନ୍ଧ ୮୭ ଅଧ୍ୟାୟ; କାଦମ୍ବରୀ ଉପାଖ୍ୟାନ, ଚନ୍ଦ୍ରାପିଡଙ୍କ ଶିକ୍ଷା ] ଏହା ମଧ୍ୟ ଆଜକାଲି କାର୍ଯ୍ୟରେ ଦେଖାଯାଏ । ଆଧୁନିକ ଅଧିକାଂଶ ଛାତ୍ର ଶିକ୍ଷାଳୟକୁ ବିଳାସ ଭୂମି ବୋଲି ମନେ କରିବାରୁ ଆଜ ଭାରତର ଏ ଅଧୋଗତି ।

୨୦୭

କୋଟରୁ ଯେପରି ଟଙ୍କା, ଅଧୁଲି, ସୁକି, ଦୋଣି, ଅଣି, ପଇସା, ଅଧଲା ହୁଏ, ସେହିପରି ସର୍ବବ୍ୟାପୀ ପରମେଶ୍ୱରଙ୍କଠାରୁ ଏ ବିଶ୍ୱ ସୃଷ୍ଟି ଉଦ୍ଭୂତ ହୋଇଅଛି ଓ ହେଉଅଛି, ପରେ ତାଙ୍କର ଦେହରେ ଲୀନ ହେବ ।

ଆବଶ୍ୟକ ହେଲେ ମହାତ୍ମାମାନେ ତାଙ୍କଠାରୁ ଜାତ ହୋଇ କାର୍ଯ୍ୟ ଶେଷ ପରେ ତାଙ୍କର ଦେହରେ ଲୀନ ହୁଅନ୍ତି ।

୧୦୮

ପ୍ରାଣୀମାନେ ଶରୀର ନାଶ ପରେ ଲିଙ୍ଗ ଶରୀର ବା ସୂକ୍ଷ୍ମ ଶରୀର ପ୍ରାପ୍ତ ହୁଅନ୍ତି ଏବଂ କର୍ମାନୁସାରେ ଶସ୍ୟ ପ୍ରଭୃତି ଖାଦ୍ୟ ପଦାର୍ଥରେ ଅଦୃଶ୍ୟ-ଭାବରେ ସହିତ ହୋଇ ପ୍ରାଣୀମାନଙ୍କ ଦ୍ୱାରା ଭକ୍ଷିତ ହୁଅନ୍ତି । ପୁନଶ୍ଚ ପିତୃ-ମାତୃ ଶରୀରରେ ପ୍ରବେଶ କରି ଯଥା ସମୟରେ ସ୍ଥୂଳ ଶରୀର ଧାରଣ କରନ୍ତି । [ପଞ୍ଚଦଶୀ, ୩୯ । ୪୨ ଶ୍ଳୋକ] । ଗୀତାରେ ଅଛି, ଶରୀର ପତନ ପରେ ଆତ୍ମା ପିତୃଲୋକ ଓ ଚନ୍ଦ୍ରଲୋକକୁ ଯାଇ ଦ୍ରବୀଭୂତ ହୋଇ ପୃଥିବୀସ୍ଥ ମହୌଷଧି-ମାନଙ୍କ ସହିତ ମିଶ୍ରିତ ହୋଇ ପ୍ରାଣୀମାନଙ୍କ ଦ୍ୱାରା ଭକ୍ଷିତ ହୁଅନ୍ତି, ପୁନଃ ଜାତହୋଇ ପୂର୍ବ କାର୍ଯ୍ୟାନୁସାରେ ଫଳାଫଳ ଭୋଗ କରନ୍ତି । ଯେଉଁ ବୃକ୍ଷମାନଙ୍କର ଫଳ ପାଚିଲେ ବୃକ୍ଷ ମରିଯାଏ ତାହାକୁ ମହୌଷଧି କହନ୍ତି ।

୧୦୯

ମହତ୍ ପୁରୁଷମାନେ ଅପମାନିତ ହେଲେ ସୁଦ୍ଧା ଉପକାର କରନ୍ତି । ବ୍ରାହ୍ମଣ ଦ୍ୱାରା ତିରସ୍କୃତ ହୋଇ ଶ୍ରୀକୃଷ୍ଣଚନ୍ଦ୍ର ଓ ଅର୍ଜୁନ ତାର ମୃତ ସନ୍ତାନକୁ ଆଣିଦେଇଥିଲେ । [୧୦ମ ସ୍କନ୍ଧ ଦ୍ୱାରକାଲୀଳା ]

୧୧୦

ମହତ୍ ପୁରୁଷମାନେ ଅନ୍ୟର କୋପରେ ବିଚଳିତ ହୁଅନ୍ତି ନାହିଁ । ଅଳ୍ପ ଲୋକେ ବିଚଳିତ ହୁଅନ୍ତି । (୧୦ମ ସ୍କନ୍ଧ ଦ୍ୱାରକାଲୀଳା, ଭୃଗୁଋଷି ବ୍ରହ୍ମା, ଶିବ ଓ ବିଷ୍ଣୁଙ୍କ ବିଷୟ )

୧୧୧

ହାତୀ ଅତି ବଡ଼ ଜନ୍ତୁ, ବଡ ବଡ ବୃକ୍ଷ ଭାଙ୍ଗି ପକାଏ । ଜନ୍ତୁ ସାମାନ୍ୟ

ପ୍ରାଣୀ ଚମ୍ପେଇ ନେଉଳକୁ ଡରୁଥାଏ । ଗୋକ୍ଷୁର ଦନ୍ତାଘାତରେ ସମସ୍ତ ପ୍ରାଣୀଙ୍କୁ ନଷ୍ଟ କରେ, ମାତ୍ର ଜନ୍ଦା ପିମ୍ପୁଡ଼ିକୁ ଡରେ, ତାଙ୍କୁ ଦନ୍ତାଘାତ କରି ପାରେ ନାହିଁ । ସେହି ଜନ୍ଦା ପିମ୍ପୁଡି ଗୋକ୍ଷୁର ମୁଣ୍ଡରେ ଚଢ଼ି ମୁଣ୍ଡ କଣା କରି ପକାଇଲେ ଗୋକ୍ଷୁର ମରିଯାଏ । ଅତଏବ ବଡ଼ ମଧ୍ୟ ସାନକୁ ଡରନ୍ତି ।

୨୧୨

ବନ୍ଧୁ ସହିତ ଖେଳ ଖେଳିବ ନାହିଁ, ଟଙ୍କା ଧାର ଉଧାର କାରବାର କରିବ ନାହିଁ । ବନ୍ଧୁ ନ ଥିଲା ସମୟରେ ତାର ସ୍ତ୍ରୀ ସହିତ କିଂବା ନିର୍ଜନରେ ପର ସ୍ତ୍ରୀ ସହିତ ସାକ୍ଷାତ କରିବ ନାହିଁ । ତାହାହେଲେ ବନ୍ଧୁପଣ ଅକ୍ଷୁଣ୍ଣ ରହିବ ।

୨୧୩

କୋଇଲାକୁ ନିରଗ୍ନି ଅବସ୍ଥାରେ ଧରିଲେ ହାତରେ କଳା ଲାଗେ । ଅଗ୍ନିଯୁକ୍ତାବସ୍ଥାରେ ଧରିଲେ ହାତରେ ଫୋଟକା ହୁଏ । ଅତଏବ କୋଇଲାପରି ବ୍ୟକ୍ତି ସହିତ ସାବଧାନ ହୋଇ କାରବାର କରିବ । ଯେଉଁ-ମାନେ ଆବଶ୍ୟକ ପଡ଼ିଲେ ଗୋଡ ଧରନ୍ତି ଓ ବିପଦରୁ ଉଦ୍ଧାର ପାଇଲେ ଚୁଟି ଧରନ୍ତି, ସେମାନଙ୍କୁ "ଚୁଟ୍ଟି ଚୁଡ଼ିଆ" କହନ୍ତି । ସେମାନଙ୍କୁ କେବେହେଁ ବିଶ୍ୱାସ କରିବ ନାହିଁ ।

୨୧୪

କଣ୍ଟା କଣ୍ଟାରେ ବାହାରେ, ଗଛ ଉପଗଛ (ମଲଙ୍ଗ)ରେ ନଷ୍ଟ ହୁଏ, ବୃକ୍ଷରେ ବୃକ୍ଷ ଘଷି ହୋଇ-ଅଗ୍ନି ଜାତକରି ନଷ୍ଟ ହୁଅନ୍ତି । ସେହିପରି ଶତ୍ରୁ ଶତ୍ରୁ ଦ୍ୱାରା ନଷ୍ଟ ହୁଏ ।

୨୧୫

ଚକ୍ଷୁର ବନ୍ଧୁ ପତା, ଦନ୍ତର ବନ୍ଧୁ ଜିହ୍ୱା, ଶରୀରର ବନ୍ଧୁ ହସ୍ତ; ଏମାନେ ଯଥାକ୍ରମେ ଚକ୍ଷୁ, ଦନ୍ତ, ଶରୀରର ଉପକାର କରନ୍ତି । ଏହିପରି ବନ୍ଧୁ ବନ୍ଧୁକୁ ରକ୍ଷା କରିବ ।